ଭକ୍ତକବି ନୀଳାମ୍ବର ଦାସଙ୍କ ବିରଚିତ

# ପଦ୍ମତୋଳା ପୁରାଣ



ଶ୍ରୀ ଦାଶରଥି ଦାସଙ୍କ ଦ୍ୱାରା

ଦ୍ୱିତୀୟବାର ପ୍ରକାଶିତ


-ପ୍ରାପ୍ତିସ୍ଥାନ:-

ଦାଶରଥି ପୁସ୍ତକାଳୟ

ବାଲୁବଜାର କଟକ

ପୋ: ଚାନ୍ଦନୀଚୌକ

ମୂଲ୍ୟ ୦.୬୨ ଦଶଅଣା ମାତ୍ର

# ପଦ୍ମତୋଳା ପୁରାଣ



## ପ୍ରଥମ ଅଧ୍ୟାୟ

### ଶ୍ଳୋକଃ

କୃଷ୍ଣଃ କରୋତୁ କଲ୍ୟାଣଂ କଂସକୁଞ୍ଜରକେଶରୀଂ
କାଳିନ୍ଦୀ ଜଳକଲ୍ଲୋଳ କୋଳାହଳ କୁତୂହଳୀ ।
ସା ତେ ଭବତୁ ସୁଟୀତେ ଦେବୀ ଶିଖରବାସିନୀ,
ଉଗ୍ରେଣ ତପସା ଲବ୍ଧଂ ଜୟା ପଶୁପତିପତିଃ ।
ଶୂନ୍ୟଂ ଶୂନ୍ୟଂ ମହାଶୂନ୍ୟଂ ଶୂନ୍ୟମଧ୍ୟେ ନିରାମୟଂ,
ନିରାମୟ ମଧ୍ୟେ ଜ୍ୟୋତିଃ ସଜ୍ୟୋତିଃ ଭଗବାନୟଂ ।
ନାରାୟଣଂ ନମସ୍କୃତ୍ୟଂ ନରଂ ଚୈବ ନରୋତ୍ତମଂ,
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ।
ମୂକଂ କରୋତି ବାଗ୍ମଳଂ ପଙ୍ଗୁଂ ଲଙ୍ଘୟତେ ଗିରିଂ,
ଯତ୍ କୃପା ତମହଂ ବନ୍ଦେ ପରମାନନ୍ଦମାଧବ ।

ଶୁକ ବୋଲନ୍ତି ରାଜେ ଶୁଣ । ଏ ପଦ୍ମତୋଳାର ଅଖ୍ୟାନ ।
ଦୈତ୍ୟ ନିବାରେ ଜନ୍ମହେବେ । କଂସକୁ ବିନାଶ କରିବେ ।
ନମଇଁ ନୃସିଂହ ଚରଣ । ଅନାଦି ପରମକାରଣ ।
ନମଇଁ ଦେବ ଜଗନ୍ନାଥ । ନମଇଁ କମଳାରିକାନ୍ତ ।
ନମଇଁ ପ୍ରଭୁ ଦାମୋଦର । ନମଇଁ କରୁଣା ସାଗର ।
ନମଇଁ ଦେବକୀ ତନୁଜ । ନମଇଁ ପ୍ରଭୁ ଦେବରାଜ ।
ଦୁଷ୍ଟ ନିବାରି ଶିଷ୍ଟ ପାଳୁ । ତୁ ନାଥ ପରମଦୟାଳୁ ।
ହରିବଂଶର ଏ ଚରିତ । ମଥୁରା ଦେଶେ ନରନାଥ ।

ତାହାର ନାମ ଉଗ୍ରସେନ । ତା ନାରୀ ଦ୍ରୁମିଳ ହରଣ ।
ଇନ୍ଦୁମତୀର ଗର୍ଭେ ଜାତ । ତହିଁରୁ ଜାତ କଂସ ଦୈତ୍ୟ ।
କାହାକୁ ତଳେ ନ ମାନିଲା । ଗର୍ବରେ ଦେବ ଦାସ କଲା ।
ଅସୁର ଦୁଷ୍ଟପଣ କଲା । ଦେବମାନଙ୍କୁ କଷ୍ଟ ଦେଲା ।
ମଥୁରାପୁରେ ଦଣ୍ଡଧାରୀ । ଦେବେ ଅଛନ୍ତି ସେବାକାରୀ ।
ବେଳକୁ ବେଳ ମନ୍ଦ କଲା । ଦେବଙ୍କୁ ପାଦେ ଘେଞ୍ଚାଇଲା ।
ଦେବତାମାନେ ବିଚାରିଲେ । ପ୍ରଭୁଙ୍କୁ ମନେ ସୁମରିଲେ ।
ଏ କଷ୍ଟ ପ୍ରଭୁ ଯେ ଶୁଣିବେ । ଅସୁର କଷଣ ଫେଡ଼ିବେ ।
ମାନସେ ବିଚାରିଲେ ଯହୁଁ । ସର୍ବ ଦେବତା ଠୁଳ ତହୁଁ ।
ବ୍ରହ୍ମା ଶଙ୍କର ଆଦିଗଣ । ମିଳିଲେ କ୍ଷୀର ସମୁଦ୍ରେଣ ।
ଅନେକ ମତେ କରି ଧ୍ୟାନ । ସ୍ତୁତି ବହିଲେ ସର୍ବଜନ ।
ସମାଧି ବସିଲା ତକ୍ଷଣ । ଚିନ୍ତଇ ଆଦି ନାରାୟଣ ।
ବ୍ରହ୍ମା ଚିନ୍ତଇ ମନେମନ । ଭେ ପ୍ରଭୁ ପଶିଲି ଶରଣ ।
ଧ୍ୟାନର ବେଳେ ନିଦ୍ରା ଯାଇ । ପ୍ରଭୁଙ୍କୁ ଜପ କରୁଥାଇ ।
ବ୍ରହ୍ମାର ଦେଖିଣ ବିକଳ । କରୁଣା କଲେ ଆଦିମୂଳ ।
ନିଦ୍ରାର ବଳେ ମୋହ କରି । ସ୍ୱପନେ କହିଲେ ମୁରାରି ।
ଶୁଣ ବଚନ ମୋର ଧାତା । ମୁଁ ଯେ ଜଗତ ପିତା ମାତା ।
ସକଳ ମୋହର ଭିଆଣ । ସକଳ ଦେବ ପରମାଣ ।
କହନ୍ତି ବେଦବର ଧାଇ । ପ୍ରଭୁଙ୍କ ମୁଖକୁ ଅନାଇଁ ।
ଦେବ ବିଚାରେ ସୃଷ୍ଟି ପାନ୍ତୁ । ଅବନୀ ଭାର ସଦା ଘାନ୍ତୁ ।
କଂସ ଯେ ବଡ଼ ଗର୍ବ କଲା । ଆମ୍ଭମାନଙ୍କୁ କଷ୍ଟ ଦେଲା ।
କାହାକୁ ବଚନ କରୁଇ । କାହାକୁ ସେବାରେ ରଖାଇ ।
କାହାକୁ ମାଡ଼ ଯେ ମାରିଲା । ଚରଣ ତଳେ ପିଙ୍ଗି ଦେଲା ।
କାହାକୁ ତଳେ ନ ମାନିଲା । ଅନେକ ଯଜ୍ଞ ଭଗ୍ନ କଲା ।
ବ୍ରହ୍ମାର ମୁଖରୁ ଶୁଣିଣ । କହନ୍ତି ପ୍ରଭୁ ଭଗବାନ ।

ମୁଁ ତାହା ଜାଣଇଁ ହେ ସର୍ବ । ଭାଙ୍ଗିବି ଅସୁରଙ୍କ ଗର୍ବ ।
ଏବେ ସକଳ ଦେବେ ଯାଅ । ଯେ ଯାହା ପୁରେ ରହୁଥାଅ ।
ମୋ ବୋଲ କର ଦେବବର । ଯାଦବ କୁଳେ ଅବତାର ।
କଂସକୁ କରିବି ବିନାଶ । କଟିବ ପୃଥିବୀ କ୍ରୋଧ ।
ଗୋପୀ ଗୋପାଳ ରୂପ ହୋଇ । ଗୋପେ ଜନ୍ମିବ ଦେହବହି ।
ତେବେହେଁ ହେବ ନାଶ କଂସ । ତବପାଇଁ ମୋ ଏତେ କ୍ଲେଶ ।
ରାବଣ ଯହୁଁ କଲି ନାଶ । ଦ୍ୟାଇଲି ବ୍ରହ୍ମହତ୍ୟା ଦୋଷ ।
ବୋଇଲେ ଶୁଣ ଦେବବର । ହେ ନାଥ କ୍ଷମ ଦୋଷ ମୋର
ଯେ ଯାହା କରଅଛୁ ଦୋଷ । ତାହା ଯେ ଭୁଞ୍ଜିବ ଅକ୍ଲେଶ ।
ମୋହର ଅପ୍ରବୃତ୍ତ ଯେ ନାହିଁ । କ୍ଷମା ଅଚର ରମାସାଇଁ ।
ଶ୍ରୀକୃଷ୍ଣ ସନ୍ତୋଷ ହୋଇଲେ । ବ୍ରହ୍ମାଙ୍କୁ ବିଦାୟ ସେ କଲେ ।
ବିଦାୟ ପାଇ ଦେବବର । ଚଳିଲେ ନିଜେ ସ୍ୱର୍ଗପୁର ।
ପୁଚ୍ଛିଲେ ଦେଖି ଦେବଗଣ । କିସ କହିଲେ ନାରାୟଣ ।
ବ୍ରହ୍ମା ବୋଲନ୍ତି ଶୁଣ ଦେବେ । ଅପୂର୍ବ ହେଲେ ନିବାରିବେ ।
ମର୍ତ୍ତ୍ୟରେ ବସୁଦେବ ଘରେ । ଜନ୍ମିବେ ଦେବକୀ ଉଦରେ ।
ଅବନୀ ମଧ୍ୟେ ଦେହ ଧରି । ଗୋପେ ଜନ୍ମିବେ ନରହରି ।
ଦୁର୍ଗାଙ୍କୁ ଯଶୋଦାର କୋଳେ । ଜାତ କରିବେ ଯୋଗବଳେ ।
ଏମନ୍ତେ ତାରିବେ ସଂସାର । ଅମ୍ଭର କରୁଣା ସାଗର ।
ଶ୍ରବଣେ ଧାତାର ବଚନ । ଦେବେ ଆନନ୍ଦ କଲେ ମନ ।
ବ୍ରହ୍ମାଙ୍କୁ ବୋଲି ଧନ୍ୟ ଧନ୍ୟ । ଗଲେ ସେ ଯେ ଯାହା ଭୁବନ ।
ଏକ ଦିନରେ ଦଣ୍ଡଧାରୀ । ମଥୁରାପୁରେ ସଭାକରି ।
ପାତ୍ର ମନ୍ତ୍ରୀଙ୍କୁ ଘେନି ସଙ୍ଗେ । ସଭା କରନ୍ତି ନୃପ ସଙ୍ଗେ ।
ନାରଦ ସନ୍ନିଧେ ହକାରି । କହନ୍ତି ସ୍ନେହଭାବ ହୋଇ ।
କେଉଁ ଦିଗରେ କେଉଁ ଲୋକ । କେ ଅଛି କାହାର ସେବକ ।
ନାରଦ ବଚନ ବୋଲଇ । ଶୁଣ ମଥୁରା ନୃପସାଇଁ ।

ହରି ଅଚିନ୍ତ୍ୟ ଶୂନ୍ୟଭରେ । ଅକାର ନାହିଁ ନିରାକାରେ ।
ଶୂନ୍ୟରେ ଜ୍ୟୋତି ନିରଞ୍ଜନ । ରୂପ ରେଖା ଯେ ନାହିଁ ଜାଣ ।
ଧୂମର ପ୍ରାପ୍ତ ହୋଇଅଛି । ଶୂନ୍ୟ ଆକାଶେ ରହିଅଛି ।
ଜନ୍ମିବେ ମର୍ତ୍ତ୍ୟ ମଣ୍ଡଳର । ରାଜା ହୋଇବେ ଜଗତର ।
ପୃଥିବୀ ଉଶ୍ବାସିବେ ହରି । ଅବନୀ ମଧ୍ୟେ ଦେହ ଧରି ।

କଂସ ଉବାଚ

ଶୁଣ ନାରଦ ଗୀର ମୋର । ମୋଠାରୁ ନାହିଁ ଭିନ୍ନପୁର ।
ବ୍ରହ୍ମାଙ୍କ ଚରଣେ ଖଟାଇ । ଦେବଙ୍କ ବସନ କଚାଇ ।
ତାହାଙ୍କୁ ସେବା କରାଇଲି । ତାହାର ଯଜ୍ଞ ଭଗ୍ନ କଲି ।
ଶୁଣିଣ ନାରଦ କହନ୍ତି । ମୋ ବୋଲକର ନରପତି ।
ପ୍ରଭୁଙ୍କ ପାଦେ ଲୟ କର । ଲଭିବ ବଇକୁଣ୍ଠ ପୁର ।
ଏମନ୍ତେ ଦୁର୍ବୁଦ୍ଧି କରୁଛ । ଦେବଙ୍କୁ କଷ୍ଟ ଦଅଇଛ ॥
ଭଣି ମଥୁରା ନୃପସାଇଁ । କେତେ ମୁଁ ପ୍ରଭୁ ଦେଖିଛଇଁ ।
ମୋ ଠାରୁ ନାହିଁ କେହି ରାଜା । ସରବେ ଅଟନ୍ତି ପରଜା ।
ଶୁଣି ନାରଦ କହୁଛନ୍ତି । ଏଡ଼େ ଗରବ ନାହିଁ ଶାନ୍ତି ।
ଅଛନ୍ତି ଶ୍ରୀହରି କବଳ । ମଥୁରା କଟକ ସମ୍ଭାଳ ।
ଶ୍ରବଣେ ବୋଲେ ଦଣ୍ଡଧାରୀ । ନାଶ କରିବି ଭାବ ହରି ॥
କହୁଛ କେତେ ଭଙ୍ଗୀ ଜାଣି । କରିବି ନାଶ ଏହିକ୍ଷଣି ।
ନିର୍ଭୂର ଏକ୍ଷଣି ଧ୍ୱଂସିବି । ମହୀକି ଭଲଟାଇ ଦେବି ।
ଶ୍ରବଣେ କହନ୍ତି ନାରଦ । ହିରଣ୍ୟ କଲା ହରି ବାଦ ।
ସ୍ତମ୍ଭକୁ ମୁଷ୍ଟିହିଁ ମାଇଲା । ଶ୍ରୀହରି ହସ୍ତେ ନାଶ ଗଲା ।
କେତେ ତୁ କରୁଅଛୁ ଠାଣି । ପଶ ଯା ଶ୍ରୀହରି ଶରଣ ।
ଏଡ଼େ ରେ ଭରସା ତୋହର । ମୋ ବୋଲ ଶୁଣରେ ଅସୁର ।
କ୍ରୋଧରେ କୃଷ୍ଣ କଂସାସୁର । ନାରଦେ ମୁଷ୍ଟିଏ ପ୍ରହାର ।
କ୍ରୋଧରେ କହନ୍ତି ନାରଦ । ରେ ମନ୍ଦ ବୁଦ୍ଧି କଲୁ ମନ୍ଦ ।

ମୋତେ ମାରିଲ୍ ଅକାରଣ । ଶୁଣ ଅସୁର ମୋ ବଚନ ।
କହୁଛି ଶୁଣ କଂସ ତୋତେ । ତୋମୃତ୍ୟୁ ଭଣଜାର ହସ୍ତେ ।
ଏମନ୍ତେ କହି ଚଳିଗଲେ । ଅପଣା ମନ୍ଦରେ ମିଳିଲେ ।
ପ୍ରଭୁଙ୍କ ନିକଟକୁ ଯାଇ । ସ୍ତୁତି କରିଲେ ଲମ୍ବ ବାହି ।
ଶୁଣ ହେ ଜଗତ ଜୀବନ । କଂସକୁ କର ନିବାରଣ ।
ଶୁଣି ବୋଇଲନ୍ତି ନରହରି । ଅମ୍ଭେ ଜନ୍ମିବୁ ଗୋପପୁରୀ ।
ବିନାଶ କରିବୁ ଅସୁର । ଯାଅ ନାରଦ ନିଜପୁର ।
ପ୍ରଭୁଙ୍କ ମୁଖରୁ ଶୁଣିଲେ । ନାରଦ ସେଠାରୁ ଚଳିଲେ ।
ଏ ଅନ୍ତେ ସ୍ୱର୍ଗପୁରେ ଯାଇ । ମନ୍ଦରେ ମିଳିଲେ ଗୋସାଇଁ ।
ଏମନ୍ତେ କଂସ ଯେ ଭାଳଇ । ନିଶି ଦିବସେ ନିଦ୍ରା ନାହିଁ ।
ଦେବକୀ ନାମେ ଭଗ୍ନୀ ତାର । ରୂପରେ ନାହିଁ ପଟାନ୍ତର ॥
ରୂପେ କମଳା ନୁହେ ସରି । ସେ କନ୍ୟା ବସୁଦେବ ବରି
ଇଚ୍ଛାରେ ମନ୍ତ୍ରୀ ନୃପେ ଭଣି । ଶୁଣମା ହେଉ ନୃପମଣି ।
ଏ ନଗ୍ରେ ଅଛି ଏକ ନର । ବସୁଦେବ ଯେ ନାମ ତାର ।
ତାହା ସମାନ ବର ନାହିଁ । ବଦନ ମସୃଣ ଅଟଇ ।
ରାଜା ବୋଇଲନ୍ତି ତୁମ୍ଭେ ଶୁଣ । ତାହାକୁ ଅଣାଅ ବହନ ॥
ଆଜ୍ଞା ପାଇଣ ମନ୍ତ୍ରୀ ଗଲେ । ବସୁଦେବ ପାଶେ ମିଳିଲେ ।
ବୋଇଲନ୍ତି ଅସ ବସୁଦେବ । ବାହା ଦେବେ ମଥୁରା ଧବ ।
ଦେବକୀ ତାହାର ଭଗିନୀ । ବାହା କରିବେ ନୃପମଣି ।
ଶ୍ରବଣେ ବସୁଦେବ ଗଲ । ଉଗ୍ରସେନକୁ ପଚାରିଲ ।
ବାହା ଦ୍ୟାଇବେ କଂସାସୁର । କହ ହେ ଏଥିର ବିଚାର ।
କଂସ ଯେ ଦୁରାଚାର ଅଟେ । ବାହା ହୋଇବ କେଉଁବାଟେ ॥
କହଇ ଉଗ୍ରସେନ ବୀର । ମୋହର ବାରେ ବୋଲିକର ।
ଚଉଦ ଭୁବନରେ ରାଜା । ସକଳ ଖଟନ୍ତି ପରଜା ।
କେମନ୍ତେ ବାହା ନ ହୋଇବ । ଶୁଣିଲେ ତୁମ୍ଭଙ୍କୁ ମାରିବ ।

ଶୁଭ କଥାକୁ ମୋତେ ଅଣି । ବରକନ୍ଦାଯ କଲ୍ ପୁଣି ।
ଯାଅ ମଥୁରା ବେଗ ହୋଇ । କଂସର ଆଜ୍ଞା ଏ ଅଟଇ ॥
ଶ୍ରବଣେ ବସୁଦେବ ଗଲେ । ରାଜାଙ୍କ ଛାମୁରେ ମିଳିଲେ ॥
ରାଜା ଦେଖିଣ ମହୋତ୍ସବ । ଅଚର କଲ ବାଣ ଧ୍ରୁବ ।
ଆନନ୍ଦେ ଭଗ୍ନି ସମର୍ପିଲେ । ଅନେକ ଯଉତୁକ ଦେଲେ ।
ବାହାନ୍ତେ ସାରନ୍ତେ ନୃପତି । ସ୍ୟନ୍ଦନେ ଚଳାଅ ତଡ଼ିତ ।
ଶୁଣିଣ ସାରଥି ଅନାଇଁ । କଂସ ଛାମୁରେ ଉଭା ହୋଇ ।

## କଂସ ଉବାଚ

ବର କନ୍ୟାକୁ ବସାଇବୁ । ସାରଥି ଯାନ ଚଳାଇବୁ ।
ତାର ପୁରକୁ ଆମ୍ଭେ ଯିବୁ । ବର କନ୍ୟାକୁ ଯେ ଛାଡ଼ିବୁ ।
ବସିଲେ ସମସ୍ତେ ରଥରେ । ରଥ ଚଳଇ ଧୀରେ ଧୀରେ ।
ଶୂନ୍ୟରେ ଶବଦ ଶୁଭିଲା । ଶୁଣରେ ଦୁର୍ମିଳାର ବଳ ।
ଯାହାକୁ ବିଭା କରୁ କିର । ତୋତେ ମାରିବ ସୁତ ତାର ॥
ଅଷ୍ଟମ ଗର୍ଭରେ ଉପୂନ୍ନ । କରିବେ ତୋ ଶିର ମର୍ଦ୍ଦନ ॥
ଶୁଣିଣ ମଥୁରା ରାଜନ । ମାନସେ ହେଲେ କୋପମାନ ।
ଶୁଣ ଲୋ ଦେବକୀ ଭଗିନୀ । ତୋତେ ମାରିବି ଏହିକ୍ଷଣି ।
କେଶ ଧରିଲା କଂସାସୁର । ଚୂରିବି ଶିଳାରେ ତୋ ଶିର ।
ଶୁଣିଣ ବସୁଦେବ ଗୁହିଁ । କିମ୍ପାଇ ମାର ନୃପସାଇଁ ।
କଂସର ଭୁଜ ଧରି କରି । ବୋଲଇ ଭଣି ଦଣ୍ଡଧାରୀ ।
ତୁମ୍ଭେତ ମହତ ପୁରୁଷ । ସଂସାରେ ଅଛୁ ତୁମ୍ଭ ଯଶ ।
ବିବାହ ବେଳେ ଏତେ କର୍ମ । କେମନ୍ତେ ସହିବଟି ଧର୍ମ ।
ଦେବ ବହିଲେ ନଷ୍ଟେ ମର । ମରଣ ଘରେ କର୍ମା ଉର ।
ଉଚଣ୍ଡାଳ ବୋଲ ନ ଶୁଣିଲା । ଶୁଣିହ ହାଣିବ ବୋଇଲା ।
ବସୁଦେବ ଯେ ବିଚାରଇ । କେମନ୍ତେ ପ୍ରାଣେ ବଞ୍ଚିବଇଁ ।
ଏମନ୍ତେ ମନେ ବିଚାରିଲା । କଂସ ମୁଖକୁ ଅନାଇଲା ।

ବୋଲଇ ଶୁଣ ବୀର କଂସ । ଛାଡ଼ନ୍ତୁ ଭଗିନୀର କେଶ ।
ଏହାର ସୁତ ତୋତେ ମାରି । ଏ ତୋର ନୁହଇ ବଇରୀ ।
ଯେତେ ବାଳକ ଜନ୍ମାଇବ । ତୋର ନିକଟେ ନିଶ୍ଚେଦେବ ।
କହୁଛି ପୁରୁଷ ମହତ୍ତ୍ୱ । କହୁଛି ତିନିବାର ସତ୍ୟ ।
ଏଠାରେ ଅଛନ୍ତି ଯେ ଯେତେ । କହୁଛି ସମସ୍ତ ଅଗ୍ରତେ ।
ଏ କଥା ମୋହର ପ୍ରମାଣ । ଏଥକୁ ସାକ୍ଷୀ ନାରାୟଣ ।
ବସୁଦେବର ମୁଖୁ ଶୁଣି । କଂସ ଯେ ମନେ ମନେ ଗୁଣି ।
ବଚନ ଜାଣିଲା ବିଶ୍ୱାସ । ଛାଡ଼ିଲା ଭଗିନୀର କେଶ ।
ଆନନ୍ଦ ହୋଇ ବେନି ଜଣ । ଗଲେ ସେ ଯେ ଯାହା ଭୁବନ
ଯେ ଯାହା ପୁରେ ଚଳିଗଲେ । କଂସ ଯେ ବହୁଡ଼ ଅଇଲେ ।
କେତେହେଁ ଦିନ ଚଳିଗଲା । ଦେବକୀ ଗର୍ଭ ଉପୁଜିଲା ।
ଜନ୍ମିଲା ଏକଇ ନନ୍ଦନ । ଏପରି ନାହିଁ ଏକଜଣ

## ବସୁଦେବ ଉବାଚ

ଏହାକୁ କପଟ ମୁଁ ଦେବି । ନ ଦେଲେ ଅସତ୍ୟ ହୋଇବି
ଦେବକୀ ମୁଖକୁ ଅନାଇଁ । କପଟ ସୁତ ଦେବ ନାହିଁ ।
ଶୁଣିଣ ଦେବକୀ ଉତ୍ତର । କଂସକୁ ନ ଦେଲେ କୁମର ।
ସତ୍ୟକୁ ଚନ୍ଦ୍ର ସୂର୍ଯ୍ୟ ରହି । ସତ୍ୟକୁ ଶଚୀ ବର କହି ।
ସତ୍ୟକୁ ବୃକ୍ଷ ଫଳଥାଇ । ଅସତ୍ୟ ହେଲେ ବୁଡ଼ିଯାଇ ।
ଶୁଣିଣ ବସୁଦେବ ଗୃହିଁ । ପୁତ୍ରକୁ କୋଳରେ ବସାଇ ।
ବସୁଦେବ ଯେ ପୁତ୍ର ନେଲା । କଂସର ଛାମୁଁରେ ମିଳିଲା ।
ଦେଖିଣ ମଥୁରା ନୃପତି । ବୋଇଲା ସତ୍ୟ ତୋର ମତି ।
ସତ୍ୟ ଯେ କହିଥିଲୁ କହି । ପୁତ୍ରକୁ ଘେନିଯାଅ ତୁହି ।
ଅଷ୍ଟମ ଗର୍ଭ ସୁତ ମାରି । ଏ ଯେ ନୁହଇ ମୋ ବଇରୀ ।
ଶୁଣିଣ ବସୁଦେବ ଚଳେ । ପୁତ୍ରକୁ କୋଳରେ ଧଇଲେ ।
ପୁତ୍ରକୁ ଘେନି ଚଳିଗଲେ । ଦେବକୀ ନିକଟେ ମିଳିଲେ ।

ଦୟା କରନ୍ତୁ ମୋତେ କଂସ । ଜାଣିଲୁ ଅମ୍ଭର ବିଶ୍ୱାସ ।
ଅନାଥ ହେଲେ ଦୁଇପ୍ରାଣୀ । ଶରଣ୍ଲେ ପ୍ରଭୁ ଚକ୍ରପାଣି ।
ଶୂନ୍ୟରେ କରି ବୀଣାନାଦ । ତକ୍ଷଣେ ମିଳିଲେ ନାରଦ ।
ଦେଖିଣ ତେଜିଲା ଆସନ । ପ୍ରଣାମ କରନ୍ତି ସ୍ୱଜନ ।
ଆସନ ଦେଇ ବସାଇଲା । ଚରଣ ତଳେ ସେବା କଲା ।
ଭକତି ଦେଖିଣ ନାରଦ । କହନ୍ତି ହୋଇ ଗଦ ଗଦ ।
ଏ ପୁତ୍ର ଛାଡ଼ିଲୁ କେମନ୍ତେ । ଯେବେ ମରିବୁ ଏହା ହସ୍ତେ ।
ଅଷ୍ଟମ ଗର୍ଭ ମୂର୍ତ୍ତି ମାରି । ତେବେ ରହିବୁ ଦଣ୍ଡଧାରୀ ।
ଏମନ୍ତ ଶୁଣିଣ ନୃପତି । ମାରିବି ଏହୁକ୍ଷଣି ସତି ।
ନାରଦ କହି ଚଳିଗଲେ । ଆପଣା ମନ୍ଦରେ ମିଳିଲେ ।
ଅସୁର ବଳ ଘେନି କଂସ । ଧାଇଁଲା ଛାଡ଼ି ଖରଶ୍ୱାସ ।
ଦେବକୀ ପାଶରେ ମିଳନ୍ତି । ଏହାକୁ ମାରିବି ବୋଇଲା ।
ଦେଖି ବୋଲନ୍ତି ବେନି ପ୍ରାଣୀ । ତୁମ୍ଭ ଭଣଜା ନୃପମଣି ।
କାହାର କଥା ଶୁଣି ମାରି । ଏ ତ ଜଗତେ ଅସୁନ୍ଦର ।
କାହାର କଥା କଂସ ସୁର । ନ ମାନି କ୍ରୋଧେ ଥରହର ।
ପୁତ୍ରକୁ ବେନିହସ୍ତେ ନେଲା । ଶିଳାରେ କଚାଡ଼ି ମାରିଲା ।
ବେନି ଜନଙ୍କୁ ବନ୍ଦୀ କଲା । ମଧୁବନରେ ରଖାଇଲା ।
ପ୍ରହରୀଗଣେ ଜଗାଇଲା । ତୁହୁଙ୍କୁ ବନ୍ଦ କରାଇଲା ।
ପକାଇଲା ସାତ କବାଟ । ମକ୍ଷୀକା ଗମେ ନାହିଁ ବାଟ ।
ପୁଣି ବୋଲଇ ପ୍ରହରୀଙ୍କୁ । କହିବ ସମସ୍ତ ଅମ୍ଭଙ୍କୁ ।
ଯେ କାଳେ ହେବ ସୁତ ଜାତ । ଅମ୍ଭଙ୍କୁ କହିବ ତୁରିତ ।
ବାରତା ନ କହିଲେ ଜାଣ । ନାଶିବି ତୁମ୍ଭର ପରାଣ ।
ଏହା କହିଣ କଂସ ଗଲେ । ଆପଣା ମନ୍ଦରେ ମିଳିଲେ ।
ବରଷ ବରଷକେ ସୁତ । ଜନ୍ମ ହୋଇଲେ ଏହିମତ ।
ଏମନ୍ତ ଷଡ଼ପୁତ୍ର ନାଶ । କଲା ଯେ ଉଗ୍ରେସନ ଶିଷ୍ୟ ।

ଦେବକୀ ଚିନ୍ତେ ଆଦିମୂଳ । ରଖ ହେ ବ୍ରହ୍ମାଣ୍ଡର ପାଳ ।
ଚିନ୍ତା କରନ୍ତି ବେଣୁପାଣୀ । ରଖ ନ ରଖ ଚିନ୍ତାମଣି ।
ଏମନ୍ତ କଷ୍ଟ ନ ସହିବ । ଆପଣା ହସ୍ତେ ପ୍ରାଣ ଦେବ ।
ଦେବକୀ ଦେଖିଣ ବିକଳ । ଦୟା ବହିଲେ ଆଦିମୂଳ ।
ଅନନ୍ତ ରୂପ ଧରି ହରି । ଦେବକୀ ଗର୍ଭେ ବାସ କରି ।
ଦେବକୀ ଅନ୍ତର ବୁଝାଇ । ଅଳ୍ପକେ ନିଶ୍ୱାସ ଛାଡ଼ଇ ।
ଛ ପୁତ୍ର କଲା କଂସ ନାଶ । ଶୁଣିଲେ ମାରିବ ଅବଶ୍ୟ ।
କେତେ ସହିବ ଗର୍ଭ କଷ୍ଟ । ବିଧାତା ଦେଲା ମୋତେ ରିଷ୍ଟ ।
ଏମନ୍ତେ ବିଚାରି ବିକଳ । ନୟନୁଁ ବହେ ଅଶ୍ରୁଜଳ ।
ଦାସ ବତ୍ସଳ ଭଗବାନ । ଜାଣିଲେ ଦେବକୀର ମନ ।
ଦୁର୍ଗାଙ୍କୁ ନିକଟେ ବସାଇ । କହନ୍ତି ବ୍ରହ୍ମାଣ୍ଡ ଗୋସାଇଁ ।
ଅମ୍ବିକା ଶୁଣ ମୋର ଗିର । ବହନ ଯାଅ ଗୋପପୁର ।
ଯଶୋଦା ଗର୍ଭରେ ରହିବୁ । ଆମ୍ଭେ ଦେବକୀ ପାଶେ ଥିବୁ ।
ଜନ୍ମିବୁ ଯଶୋଦା କୋଳରେ । ଆସିବୁ ମଥୁରା ନଗରେ ।
ଦେବକୀ ବନ୍ଦୀଘରେ ଥାଇ । ତାର କୋଳରେ ଥିବୁ ରହି ।
ଆମ୍ଭେ ଜନ୍ମିବୁ ତା ଉଦରେ । ରହିବୁ ଯଶୋଦା କୋଳରେ ।
ଶୁଣିଣ ଅମ୍ବିକା ସୁନ୍ଦରୀ । ଗଲେ ସେ ଗୋପର ନଗରୀ ।
କହନ୍ତି ପ୍ରଭୁ ଭାବଗ୍ରାହୀ । ସଙ୍କର୍ଷଣର ମୁଖ ଚାହିଁ ।
ଯାଅ ତୁ ମମ ବାକ୍ୟ ଧରେ । ଜନ୍ମିବୁ ରୋହିଣୀ ଉଦରେ ।
ରୋହିଣୀ ଉଦରେ ତୋ ଜନ୍ମ । ନାମ ହୋଇବ ବଳରାମ ।
ଆମ୍ଭେ ଯେ ଦେବକୀ ଉଦରେ । ଜନ୍ମିବୁ ଅଷ୍ଟମ ଗର୍ଭରେ ।
ଶୁଣିଣ ସଙ୍କର୍ଷଣ ଗଲେ । ଗୋପରେ ପ୍ରବେଶ ହୋଇଲେ
ଦେବକୀ ଗର୍ଭରେ ରହିଣ । ଡାକନ୍ତି ରଖ ନାରାୟଣ ।
ଦାସ ବତ୍ସଳ ଭଗବାନ । ତୁ ନାଥ ଜଗତ ଜୀବନ ।
ଭାର ମୁଁ ସହି ନ ପାରଇ । ନୟନୁ ଅଶ୍ରୁଜଳ ବହି ।

ଶୁଣିଣ ଦେବକୀ ବଚନ । ଦୟା ବହିଲେ ଅଦମୂଳ ।
ଦେବକୀ ଗର୍ଭେ ଭବଗ୍ରାହୀ । ଜନ୍ମିବେ ବ୍ରହ୍ମାଣ୍ଡ ଗୋସାଇଁ ।
ବ୍ରହ୍ମା ଶଙ୍କର ଦେବମାନେ । ତେତିଶ କୋଟିଏ ପ୍ରମାଣେ ।
ମିଳିଲେ ମଥୁରା ନଗରେ । ଦେବକୀ ଦେବୀ ବନ୍ଦଘରେ ।
ଗର୍ଭକୁ ଗୃହି ଗଦାଧର । ସ୍ତୁତି କରନ୍ତି ବେଦବର ।
ବାସବ ଆଦି ଦଗପତି । ଯେ ଯାହା ମତେ କଲେ ସ୍ତୁତି ।
ତୁ ନାଥ ପରମ ମଙ୍ଗଳ । ଜଗତ ପାଳ୍କ ଅଦମୂଳ ।
ସତ୍ୟେ ବ୍ରହ୍ମାଙ୍କ କଲ ଜାତ । ସତ୍ୟ ସ୍ୱରୂପ ତୁ ଅଚ୍ୟୁତ ।
ସତ୍ୟେ ତେ ହର ଅଡଯାତ । ଅମ୍ଭେ ଜାଣିଲୁ ତୋର ସତ୍ୟ ।
ତ୍ରୟର ଯେତେ ଗୁଣମାନ । ସ୍ୱରୂପ ତୋହର ଭିଆଣ ।
ସକଳ ଦେବେ ସ୍ତୁତି କଲେ । ଅମ୍ଭଙ୍କ ହୃଦୟ ଜାଣିଲ ।
ଏମନ୍ତେ ପାହିଲା ରଜନୀ । ଦେବକୀ ମୁଖ ଗୃହି ଭଣି ।
ତୋହର ଉଦରେ ଜଗନ୍ନାଥ । ଜଗତ ପାଳକ ତୋ ସୁତ ।
କଂସର ଭୟେ ଜନ୍ମ ହେବେ । ଆପଣା ହସ୍ତେ ମାରିବେ ।
ବ୍ରହ୍ମା ଶଙ୍କର ଆଦିକରି । ଦେବେ ଚଳିଲେ ନିଜପୁରୀ ।
ଦେବକୀ କହି ଚଳିଗଲେ । ଯେ ଯାହା ମନ୍ଦରେ ମିଳିଲେ ।
ଶୁଣ ହେ କୃଷ୍ଣଙ୍କର କଥା । ମନ୍ଦ ଗୁଞ୍ଜିବ ଭବ ବ୍ୟଥା ।
ହରିଙ୍କ କର ନିଷ୍ଠେ ଧ୍ୟାନ । ଲଭିବ ବଇକୁଣ୍ଠ ସ୍ଥାନ ।
ମୂଳଟି ଅଟଇ ବିଶ୍ୱାସ । ଭଣଇ ନୀଳାମ୍ବର ଦାସ ।

ଇତି ଶ୍ରୀ ପଦ୍ମତୋଳା ପୁରାଣେ ଭକ୍ତମାର୍ଗେ ସ୍ତୁତିକରଣେ
କଂସ ବନ୍ଦୀ ନିବେଦନେ ଦେବକୀ ଉଦରେ
ନାରାୟଣୋ ନାମ ପ୍ରଥମୋଽଧ୍ୟାୟଃ ।



# ଦ୍ୱିତୀୟ ଅଧ୍ୟାୟ

ଶୁକ ବୋଲନ୍ତି ରାଜ୍ୟ ଶୁଣ । ଶ୍ରୀକୃଷ୍ଣ ଜନ୍ମର ବିଧାନ ।
ଜାତ ହୋଇବେ ମଥୁରାରେ । ଜନ୍ମିବେ ଦେବକୀ ଉଦରେ ।
ବଢ଼ିଲା ଦେବକୀ ଉଦର । ସ୍ୱାମୀକୁ ବୋଲଇ ଏ ଗିର ।
ହେ ନାଥ ଶାନ୍ତ ନାରାୟଣ । କେ ସହେ ଗର୍ଭର ଭିଷଣ ।
ଦେବକୀ ଅଚେତନ ହୋଇ । ଭୂମିରେ ପଡ଼ିଲାକ ଶୋଇ ।
ଆକାଶେ ଉଦେ ନିଶାଚର । ଗୋବିନ୍ଦ ଉଦରୁ ବାହାର ।
ନୀଳ ଜୀମୂତ ଦେହକାନ୍ତି । ମଳୟ ମଣି ଝଟକନ୍ତି ।
ଏମନ୍ତେ ଗଲା କେତେକ୍ଷଣ । ଦେବକୀ ହେଲା ସଚେତନ ।
ଦେଖିଲେ ପ୍ରଭୁ ଆଦିମୂଳେ । ଜନ୍ମ ହୋଇଲେ ବନ୍ଦଶାଳେ ।
ଶ୍ରୀହରି ମୁଖକୁ ଅନାଇ । ସ୍ତୁତି ଯେ କରୁଅଛି ରହି ।
ଅପୂର୍ବ ରୂପ ଯୋଗେଶ୍ୱର । ଦେବ ମାନବେ ଅଗୋଚର ।
ଧୀରେ ଗୃହରେ ବସୁଦେବ । ଦେଖିଲା ଅନାଦି ମାଧବ ।
କି ବୁଦ୍ଧି କରିବଇଁ ମୁହିଁ । ସ୍ତୁତି କରଇ ତାଙ୍କୁ ଗୃହିଁ ।
ତୋହର ଜନ୍ମ ଅମ୍ଭଘରେ । ଶୁଣିଲେ କଂସ କୋପଭରେ ।
ଛ ପୁତ୍ର ମାଇଲା ମୋହର । ତୁ କି ନ ଜାଣୁ ଚକ୍ରଧର ।
ତୋତେହେଁ ତୁହି ରକ୍ଷାକର । ମୁଁ ଛାର ମନୁଷ୍ୟ ମାତର ।
ଚଞ୍ଚଳ ମନ କର ସ୍ଥିର । ଦେବକୀ ବୋଲଇ ଏ ଗିର ।
ତୁମ୍ଭଙ୍କୁ କାହିଁ ଲୁଚାଇବି । କେଉଁ ଦିଗକୁ ପଳାଇବି ।
ମାତା ଯେ ବୋଲନ୍ତି ଶ୍ରୀଧର । ସ୍ତୁତି ରଖ ଚକ୍ରଧର ।
ମାତାଙ୍କ ଠାରୁ ଶୁଣି ଗିର । ବୋଲନ୍ତି ବ୍ରହ୍ମାଣ୍ଡ ଠାକୁର ।
ବ୍ରହ୍ମା ଶଙ୍କର ଆଦି ଯେତେ । ସ୍ତୁତି କରିଲେ ଯେ ସମସ୍ତେ ।
ଏବେ ବକ୍ତବ୍ୟ ନାହିଁ ବେଳ । ମୋତେ ଘେନିଣ ବେଗେଚଳ
ନନ୍ଦ ମନ୍ଦିରେ ମୋତେ ଥୋଇ । କନ୍ୟାକୁ ଆଣ ପାଲଟାଇ ।

ଶୁଣିଣ ବସୁଦେବ ଗଲେ । ପ୍ରଭୁଙ୍କୁ କନ୍ଧେ ବସାଇଲେ ।
ଫିଟିଲା ପାଦର ଶାଙ୍କୋଳ । ପଥ କଢ଼ାଇଲା ବିଜୁଳି ।
ଅନ୍ଧାରେ ବରଷଇ ଜଳ । ପଥ ନ ଦିଶେ କୂଳ କୂଳ ।
ନିଦ୍ରାରେ ମୋହିତ ସକଳ । ବୃଷ୍ଟି କରଇ ମେଘମାଳ ।
ଗମନ୍ତି କୃଷ୍ଣଙ୍କୁ ଘେନିଣ । ପଥ ଜଗାଳି ଉଗ୍ରସେନ ।
ବୋଲଇ ଅରେ କାହୁଁ ଚୋର । ଜାଣାବେ ହୋଇଲ୍ ବାହାର ।
ପ୍ରଭୁ ଯେ ଦିଅନ୍ତି ଉତ୍ତର । ଶୁଣ ହେ ଉଗ୍ରସେନ ବୀର ।
ଏ କଥା ଚହଳ ନ କର । ଅମ୍ଭେ ତ ଯିବୁ ଗୋପପୁର ।
ତୁ କି ନ ଜାଣୁ ଉଗ୍ରେସନ । ଅମ୍ଭେ ତ ପ୍ରଭୁ ଭଗବାନ ।

ଉଗ୍ରସେନ ଉବାଚ

କୃତାର୍ଥ କର ମୋ ଜୀବନ । ଦେଖାଅ ଶଙ୍ଖ ଚକ୍ର ଚିହ୍ନ ।
ଭକ୍ତଙ୍କୁ ଦେଖି ଭାବଗ୍ରାହୀ । ଶଙ୍ଖ ଚକ୍ର ଚିହ୍ନ ଦେଖାଇ ।
ଉଗ୍ରସେନ ଯେ ପ୍ରଣମିଲା । ତରିଲି ତରିଲି ବୋଇଲା ।
ବୋଲନ୍ତି ପ୍ରଭୁ ଭଗବାନ । କହୁଛୁ ଶୁଣ ଉଗ୍ରସେନ ।
କଂସକୁ ମାରି ରାଜପଦ । ତୋତେ ମୁଁ ଦେବଇଁ ସମ୍ପଦ ।
ଶୁଣିଣ ଉଗ୍ରସେନ ରହି । ସେଠାରୁ ଗଲେ ଭାବଗ୍ରାହୀ ।
ଯମୁନା ନଦୀରେ ମିଳିଲେ । ଉଚ୍ଛୁଳି ପଡ଼ୁଛି ଦ୍ୱିକୂଳେ ।
ହରିଙ୍କୁ ବଡ଼ ଭୟ କଲା । ବାଲି ବନ୍ଧରେ ବାଟ ଦେଲା ।
ଦୁଇ ପାଖରେ ଅଛି ନୀର । ଚାଲନ୍ତି ବାଲିର ଉପର ।
ପ୍ରବେଶ ହେଲେ ଗୋପପୁର । ମିଳିଲେ ନନ୍ଦର ମନ୍ଦିର ।
ଅମ୍ବିକା ହୋଇଅଛି ଜାତ । ଜଗତ ନିଦ୍ରାରେ ମୋହିତ ।
ଯଶୋଦାକୋଳେ କୃଷ୍ଣଥୋଇ । କନ୍ୟା ଆଣିଲା ପାଲଟାଇ ।
ମିଳିଲା ଦେବକୀ ନିକଟ । ତତ୍‌ଷଣେ ପଡ଼ିଲା କବାଟ ।
ପ୍ରହରୀମାନେ ଚଳିଗଲେ । କଂସ ଆଗରେ ଜଣାଇଲେ ।
ଦେବକୀ ଗର୍ଭରୁ ସମ୍ଭୂତ । ହୋଇଛି ଏବଇ ଦୁହିତ ।

ଶୁଣିଣ କଂସ ନୃପମଣି । ଖଡ଼ଗ ଧରି ତତକ୍ଷଣି ।
ମିଳିଲା ଦେବକୀ ପାଶରେ । କନ୍ୟା ଦେଖିଲା କୋପଭରେ ।
ମାରିବି ବୋଲି ଖଡ଼୍ଗ ଧରି । ଦେବକୀ ମୁଖ ଚାହିଁ କହି ।
ଦେବକୀ ବୋଲଇ ଏ ଗୀର । ଶୁଣ ମଥୁରା ନୃପବର ।
ତୋର ପୁତ୍ରକୁ ମୁହିଁ ଦେବି । ଦୁହିତା ବଞ୍ଚ କରାଇବି ।
ଛ ପୁତ୍ର ମାଇଲୁ ମୋହର । ଭଣଞ୍ଜୀ ଗୋଟି ରକ୍ଷା କର ।
କୋପ ବହିଣ କଂସ ଚାହିଁ । ତା ଠାରୁ ଦୁହିତା ଛଡ଼ାଇ ।
ମାରିବା ଅର୍ଥେ ଉଞ୍ଚାଇଲା । ନ ମାର ଅମ୍ବିକା ବୋଇଲା ।
କମ୍ପାଇଁ କରୁଡ଼ୁ ତୁ ମୋତେ । ମାରିବେ ଦୀନବନ୍ଧୁ ତୋତେ ।
ତୁପତେ ଗୋପରେ ବଢ଼ୁଛି । ମାରିବେ ବୋଲି ରହିଅଛି ।
ଏହାର ନାଶ କଲୁ ସୁତ । ଅଳପ ଦିନେ ହେବୁ ହତ ।
ଶ୍ରବଣେ ଦୁଷ୍ଟ କଂସାସୁର । କୋପରେ ବୁଲଏ ପ୍ରଖର ।
ହାତରୁ ଖସି କନ୍ୟା ଗଲା । ଶୂନ୍ୟରେ ଲୁଚିଣ ରହିଲା ।
ପୁଣି ସେ ଦୁଷ୍ଟ କଂସ ବୀର । ବୋଲଇ ଦେବକୀକୁ ଗିର ।
ତୁମ୍ଭର ନାହିଁ ଟିକେ ଦୋଷ । ତୁମ୍ଭଙ୍କ ହୋଇଲି ସନ୍ତୋଷ ।
ଏ ତ ନୁହଇ ମୋ ବଇରୀ । ଅଷ୍ଟମ ଗର୍ଭ ମୋତେ ମାରି ।
ଜଗତ ମାତା ଯାହା କହି । କର୍ଣ୍ଣରେ ଶୁଣିଥିଲି ରହି ।
କହିଣଛନ୍ତି ବ୍ରହ୍ମାସୁତ । ମାରିବ ଅଷ୍ଟମ ସମ୍ଭୂତ ॥
ବନ୍ଦୀ ଫେଡ଼ିଲା ବେନିଜନେ । କଳଣି ଫେଡ଼ିଣ ତକ୍ଷଣେ ।
ଶାକୋଳି ଫିଟାଇଲା ଦେଖି । ଦୁହିଙ୍କି ମଧୁବନେ ରଖି ।
ଏମନ୍ତେ ରଜନୀ ପାହିଲା । ଆପଣା ମନ୍ଦିରେ ମିଳିଲା ।
କଂସ ଯେ ମାନସେ ଭାଳଇ । ନିତ୍ୟହିଁ ପାଞ୍ଜି ଦେଖୁଥାଇ ॥
ଏମନ୍ତେ ପ୍ରଭୁ ଦାମୋଦର । ମାୟାରେ ରହି ଗୋପପୁର ॥
ନନ୍ଦ ଯେ ଦେଖିଣ ଅନନ୍ଦ । ଚିନ୍ତିଲା ଏତ ଆଦିକନ୍ଦ ।
ଯଶୋଦା ଦେଖି ଅଦମ୍ଭଳେ । କ୍ଷୀର ପିଅନ୍ତି କୁତୁହଳେ ।

ଶ୍ରୀକୃଷ୍ଣ ଜନ୍ମର ବାରତା । ଶୁଣିଲେ ଗୋପର ବନିତା ।
ଧାଇଁଲେ ଏକ ଯେ ଅନେକ । ଦର୍ଶନେ ନନ୍ଦର ବାଳକ ।
ବୋଇଲେ ଏତ ନାରାୟଣ । ନାଶିବେ କଉଣପ ଜନ ।
ବୋଲନ୍ତି ଯଶୋଦାକୁ ଗୃହିଁ । କି ତପ କରୁଅଛୁ ତୁହି ।
ଏତ ଅନାଦି ନାରାୟଣ । ଦିଅ ତୋ ବୋଲେ କ୍ଷୀରଯାନ
ନନ୍ଦ ଯେ ହୋଇଲେ ଅନନ୍ଦ । ପୂଜିଲେ ବ୍ରାହ୍ମଣଙ୍କ ପାଦ ।
ବ୍ରତରେ ବହୁତର ଧନ । ଉତ୍ସବ ନନ୍ଦର ସଦନ ।
ଦାନରେ ତୃପ୍ତ କରାଇଲେ । ବ୍ରାହ୍ମଣେ ଅନନ୍ଦ ହୋଇଲେ ।
କଲ୍ୟାଣ କରନ୍ତି ବ୍ରାହ୍ମଣେ । ଚିରଞ୍ଜୀବି ହେଉ ତୋ ନନ୍ଦନ
ପଣ୍ଡିତଜନଙ୍କୁ ଡକାଇ । କହନ୍ତି ସ୍ନେହଭର ହୋଇ ।
ଭାଦ୍ରବ ଅଷ୍ଟମୀ ଯେ ନିଶୀ । ରୋହିଣୀ ରୁକ୍ଷ ବୃଷ ରାଶି ।
କହି ମୋ ପୁତ୍ରଟି ଉତ୍ପନ୍ନ । ଦୈବଜ୍ଞଗଣେ ହେ ବହନ ।
ଗଣିଲେ ଶ୍ରୀକୃଷ୍ଣ ଜନମ । ଶୁଣ ହେ ନନ୍ଦ ନରୋତ୍ତମ ।
ଏ ପୁତ୍ର ହେବ ବଳବନ୍ତ । ନାଶିବେ ଅନେକ ଦଇତ ।
ସହଜେ ମାତୁଳ ମାରିବ । ମହୀରେ ଯଶ ରଖାଇବ ।
ରମିବ ଧେନୁ ବ୍ରଜବାଳା । କରିବ ଗୋପପୁରେ ଲୀଳା ।
ଏହାଙ୍କ ଶ୍ରୀକୃଷ୍ଣ ଯେ ନାମ । ଭାଇ ଯେ ଅଟନ୍ତି ବଳରାମ ।
ପଣ୍ଡିତ ଗଣି ଯେ କହିଲେ । ନନ୍ଦ ଯେ ଅନନ୍ଦ ହୋଇଲେ ।
ଏହାଙ୍କ ଆଦିଅନ୍ତ ନାହିଁ । ମାନବ କହି ନ ପାରଇ ।
ବ୍ରାହ୍ମଣେ ବିଦାୟ ହୋଇଲେ । ଅନେକ କଲ୍ୟାଣ ବାହୁଲେ ।
ନନ୍ଦ ଯେ ଉତ୍ସବ ଅନନ୍ଦ । ଗୋପେ ରହିଲେ ଆଦିକନ୍ଦ ।
ଶ୍ରୀକୃଷ୍ଣ ଗୋପରେ ବଢନ୍ତି । ଲବଣୀ ସର ଯେ ଭୁଞ୍ଜନ୍ତି ।
ପେଠାଇ କରନ୍ତି ଗମନ । କରନ୍ତି ମୃତ୍ତିକା ଭକ୍ଷଣ ।
ଯଶୋଦା ଦେଖିଣ ଅଛନ୍ତି । ସ୍ତନ ଭିଡ଼ିଣ କ୍ଷୀର ଦ୍ୟନ୍ତି ।
ଶ୍ରୀମୁଖେ ଚୁମ୍ବନ ଦିଅଇ । ପଲ୍ୟଙ୍କେ ଶୁଆଇଲେ ନେଇ ।

ଶ୍ରୀକୃଷ୍ଣ କରନ୍ତି ରୋଦନ । ଯଶୋଦା କରନ୍ତି ସାନ୍ତ୍ୱନ ।
ପୁଣିହିଁ କେତେବେଳେ ଯାଇଁ । ଭୂମିରେ ଗଡ଼ନ୍ତି କହ୍ନାଇ ।
ଗୋପୀଏ ଦେଖିଣ ନାଅନ୍ତି । କୋଳେ ବସାଇ ଚୁମ୍ବଦ୍ୟନ୍ତି ।
କେହୁ ବୋଲନ୍ତି ବାପ ଭାଇ । ତୋ ମୁଖେ ମୁହିଁ ଲୁଣଯାଇ ॥
ଏମନ୍ତେ କଜ୍ଜ୍ଝୁକ କରି । ଦାନ ବାଣ୍ଟନ୍ତି ଗୋପନାରୀ ।
କେ ବୋଲେ ଦୁଃଖର ସଙ୍ଖାଳି । ଅବ୍ଜ ନୟନ ବନମାଳୀ ।
କେବୋଲେ କୋଳକରି ନେବା । କେବୋଲେ ନିଦ୍ରାରେ ମଣ୍ଡିବା
ଏମନ୍ତେ ପ୍ରଭୁ ଭଗବାନ । ଗୋପୀଙ୍କ ସଙ୍ଗେ କ୍ରୀଡ଼ାମାନ ।
ଏମନ୍ତେ କେତେଦିନ ଅନ୍ତ । ଖେଳୁ ଯେ ଥିଲେ ନନ୍ଦସୁତ ।
ଅନ୍ଧ ଭିକ୍ଷୁକ ଏକ ମିଳି । ଭିକ୍ଷାର୍ଥେ କୃଷ୍ଣପାଶେ ଚଳି ।
ତହିଁ ଯେ କୃଷ୍ଣ ଝେପି ଦେଲି । ଅନ୍ଧର ନେତ୍ର ଗଲା ଖୋଲି ।
ଏମନ୍ତେ କେତେଦିନେ କଂସ । ସଭା କଲା ମଥୁରା ଦେଶ ।
କଂସ ଯେ ପାଇଲା ବାରତା । ଶ୍ରୀକୃଷ୍ଣ ଜନମର କଥା ।
ଗୋପରେ ଜନମ ହୋଇଛି । ନନ୍ଦର ଗିରିସୁତ ଅଛି ।
କଗତ ଉପରେ ଭାଳଇ । କେମନ୍ତେ ମାରିବି କହ୍ନାଇ ।
ପାତ୍ର ମନ୍ତ୍ରୀଙ୍କୁ ବସାଇଣ । କହନ୍ତି ମଥୁରା ରାଜନ ।
ନାରଦ କହିଛନ୍ତି ମୋତେ । ତୋ ମୃତ୍ୟୁ ଭଣଜାର ହସ୍ତେ
କହ ଉପାୟ ଭଗବାନ । କରିବା ବିଗୁର କେସନ ।
ଯେ ହରି ମାରିବ ହେ ଯାଇ । ସ୍ୱର୍ଗରେ ଇନ୍ଦ୍ର କରିବଇଁ ।
ଏମନ୍ତେ କଂସ ଯେ ଭାଳଇ । ନିଶି ଦିବସେ ନିଦ୍ରା ନାହିଁ ।
ବୋଲଇ ପୂତନା ଭଗିନୀ । ଶୁଣ ହେ କଂସ ନୃପମଣି ।
ତୁ ଯେବେ ମୋତେ ଦୟାକରୁ । ମାରିବି କୃଷ୍ଣର ଗୋପରୁ ।
କ୍ଷମା ତୁ ହେଲୁ ନୃପରାୟ । ଯିବ ତୋ ଅଜ ଶତ୍ରୁଭୟ ॥
ଶୁଣି ସାନନ୍ଦ ନୃପକଂସ । ବୋଲଇ ତୁ ମୋର ବିଶ୍ୱାସ ।
ପୂତନା ଭଗିନୀ ତୁ ମୋର । ଜାଣିବି ତୋର ଉପକାର ।

ଶୁଣିଣ ଉଠିଲା ଅସୁରୀ । ଶୀରରେ କର ଯୋଡ଼ି କରି ।
ହୋଇଲା ମନୋହର ବେଶ । ପୂରିଲ ଉରଜ ବିକାଶ ।
ବେନି ସ୍ତନରେ ବିଷ ଭରି । ସଧୀରେ ଗଲା ଗୋପପୁରୀ ।
ଗୋପରେ ପ୍ରବେଶ ହୋଇଲା । ଦେଖିଲେ ଗୋପର ଅବଳା ।
କାହାର ଅଟୁ ତୁ ଗୋ ନାରୀ । କହ୍ନା ଅଇଲୁ ଗୋପପୁରୀ ।
ପୂତନା ବୋଲେ ଶୁଣ ବାଳୀ । ମୋହର ପୁତ୍ର ମଲା କାଲି ।
ଭଡ଼ାଇ ଅଛି ମୋର ସ୍ତନ । ଜୁଗୁଳ ହେଉଛି ମୋ ପ୍ରାଣ ।
ତୁମ୍ଭର ଥିଲେ ଗୋ କୁମର । ଦିଅ ମୁଁ ପିଆଇବି କ୍ଷୀର ।
ଏତେକ ଅସୁରୀ ଯେ କହି । ଭୂମିରେ ପଡ଼ିଲାକ ଶୋଇ ।
ସ୍ତନ ମୋ ପୀଡ଼ା କରୁଅଛି । କ୍ଷଣେ ସହି ନ ପାରୁଛି ।
ଏମନ୍ତ କାନ୍ଦଇ ଅସୁରୀ । ଦେଖିଣ ଗୋପର ସୁନ୍ଦରୀ ।
ବହନେ ତହୁଁ ଚଳିଗଲେ । ଯଶୋଦା ଅଗରେ କହିଲେ ।
ଶୁଣ ଗୋ ନନ୍ଦର ଘରଣୀ । ଅସିଛି ଏକଇ ତରୁଣୀ ।
ତାହାର ଅଛି ପୁତ୍ର ମରି । ସ୍ତନ ତା ଅଛି ପୀଡ଼ା କରି ।
ତୋହର ଯେ ବେନି ପୁଅଙ୍କୁ । କ୍ଷୀର ପିଆଇବ ଶ୍ରୀ କୃଷ୍ଣଙ୍କୁ ।
ଯଶୋଦା ବୋଇଲେ ଗୁଆଳୀ । ଅଣ ତୁ ବେଗେ ଯାଇ ବାଳୀ ।
ଶୁଣି ଧାଇଁଲେ ଗୋପବାଳୀ । ଅଇଲେ ଘେନିଣ ସୁନ୍ଦରୀ ।
ଦେଖି ବୋଲନ୍ତି ନନ୍ଦରାଣୀ । ଅସ ତୁ ମୋ ଘର ତରୁଣୀ ।
ମୋର ପୁତ୍ରଙ୍କୁ କ୍ଷୀର ଦେବୁ । ମୋ ଘରେ ରାଣୀ ତୁ ହୋଇବୁ
ଦେବି ମୁଁ ତୋତେ ବସ୍ତ୍ର ଅନ୍ନ । ଦିଅ ମୋ ପୁତ୍ରେ କ୍ଷୀରପାନ ।
ପୂତନା ବୋଲଇ ଏ ଗିର । ମୋ କୋଳେ ଦିଅ ତୋ କୁମର
ପୁଣି ସାନନ୍ଦ ନନ୍ଦରାଣୀ । କୃଷ୍ଣଙ୍କୁ ଦେଲା କୋଳେ ଅଣି ।
ପୂତନା କୋଳରେ ଧଇଲା । ସ୍ତନରୁ କାଞ୍ଚୁଲା ଫେଡ଼ିଲା ।
ସଧୀରେ ସ୍ତନ ବେନି ଧରି । କ୍ଷୀର ପିଅନ୍ତି ନରହରି ।
ସେ ଅନ୍ତର୍ଯ୍ୟାମୀ ନାରାୟଣ । ଅନାଦି ନାଥ ନିରଞ୍ଜନ ।

ଷୀର ସଙ୍ଗତେ ତା ଚରଣ । ଶୋଷିଲେ ଦେବ ନାରାୟଣ ।
ଗର୍ଜିଣ ପୁତନା ଅସୁରୀ । ମହୀ ଲେଟିଲା ଅଢେଇ ଗୋସ୍ରୀ ।
ଗୋପୀଏ ତହୁଁ ଚଳିଗଲେ । ଯଶୋଦା ଅଗରେ କହିଲେ ।
ଭାହୁଁ ଯେ ଅସୁରୀ ଅଇଲା । ମାରିବ ବୋଲି ଆସିଥିଲା ।
ମହୀର ଭାର ନ ସହଇ । ଶୋଷିଲେ ପ୍ରଭୁ ଭବଗ୍ରାହୀ ।
ଗୋପୀଙ୍କ ମୁଖୁଁ ଏହା ଶୁଣି । ଧାଇଁ ଅଇଲେ ନନ୍ଦରାଣୀ ।
ପୁତନା କୋଳୁ ଯଶୋବନ୍ତୀ । ପୁତ୍ରକୁ ଘେନିଣ ପଳାନ୍ତି ।
ଦେଖି ଅସୁରୀ ଦୁଷ୍ଟପଣ । ମାରିବ ବୋଲି ନାରାୟଣ ।
ପରର ମନ୍ଦ ଯେ ଚିନ୍ତଇ । ଦଇବ ତାହାକୁ ମାରଇ ।
ସୁଜନେ ମନ୍ଦ ନ ଚିନ୍ତିବ । ପରହିତରେ ସଦା ଥିବ ।
ପୁତନା ମୃତ୍ୟୁର ବାରତା । ଶ୍ରବଣେ କଂସ କଲା ଚିନ୍ତା ।
ଜଗତୀ ପରେ ନୃପସାଇଁ । ଭାଳଇ କି କରିବି ମୁହିଁ ।
ଡକାଇ ଅଷ୍ଟ ସେନାପତି । କହଇ କଂସ ଯେ ନୃପତି ।
ତୁମ୍ଭେ ରେ ଯାଅ ଗୋପପୁର । ମାରିବ ନନ୍ଦର କୁମର ।
ଅଷ୍ଟ ଯେ ସେନାପତି ଗଲେ । ଗୋପରେ ପ୍ରବେଶ ହୋଇଲେ
ଏକହୁ ଯେ ଷଣ୍ଢ ରୂପ ଧରି । ବଡ଼ା ଶକଟା ଅଦାକରି ।
ଷଣ୍ଢ ଅସୁର ମନ୍ଦ କଲା । ଗାଈଙ୍କ ସଙ୍ଗତେ ମିଶିଲା ।
ଶେଷେ ହୋଇଲା ଅଗଭର । ଭୁଷିବ ବୋଲି କୃଷ୍ଣ ଜର ।
ଶ୍ରୀହରି ଜାଣି ତା ପାରିଲେ । ଷଣ୍ଢର ପ୍ରାଣ ସଂହାରିଲେ ।
ପୁଣିହୁଁ ବକାସୁର ଗଲା । ବକର ସ୍ୱରୂପ ଧଇଲା ।
ମେଲିଏ ବେଳାପାଟି ଫାଳ । ଗିଳିବ ଭୁବନ ମଣ୍ଡଳ ।
ଶ୍ରୀକୃଷ୍ଣ ଚିରି ପାଟି ତାର । ହେଳେ ପେଷିଲେ ଯମପୁର ।
ଏମନ୍ତେ ବୃଷ ଛାୟା ଧରି । ବିଶ୍ରାମ କରିଛନ୍ତି ହରି ॥
ଶକଟାସୁର ମାୟା କଲା । ଶକଟରୂପେ ଧାଇଁଗଲା ।
ଶକଟା ଚକ୍ର ମଡ଼ାଇବି । ଅଦୃଶ୍ୟ ହେଲେ ବିନାଶିବି ।

ଏମନ୍ତ ପାଞ୍ଚ ଯାଇଥିଲ । ପାଦ ଲାଗନ୍ତେ ଚୂର୍ଣ୍ଣ ହେଲ ।
ଗୋଠରୁ ବାହାରିବା କାଳେ । ଅଘା ଅସୁର ମାରୁଥିଲେ ।
ବେନି ପାଟିକୁ ଦେଲ ଚିରି । ଗିଳିବ ଅବା ତନୟୁଗ୍ମ ।
ଗର୍ଜ୍ଜିଲ ଫୁତ୍କାର ସ୍ୱନେ । ଭସ୍ମିଲ ବନ ତା ଗର୍ଜ୍ଜନେ ।
ଶ୍ରୀକୃଷ୍ଣଆଦି ଗୋପବାଳେ । ଗର୍ଭେ ଯାଇଲେ ଅବହେଳେ ।
ତହୁଁ ଶ୍ରୀକୃଷ୍ଣ ମାୟାବଳେ । ମନ୍ଦର ଗିରି ପ୍ରାୟ ହେଲେ ।
ଫାଡ଼ିଲେ ଅଜଗର ମୁଣ୍ଡ । ଅସୁରମଲ୍ଲ ଲଭି ଦଣ୍ଡ ।
ବିପଜ୍ଜାଳାରୁ-ଆଦିମୂଳ । ହରି ଜ୍ୟାଇଲେ ଗୋପ ବାଳ ।
ଏମନ୍ତେ ଅଷ୍ଟସେନାପତି । ମାରିଲେ ଉଗ୍ରସେନ ନାତି ।
କଂସ ଯେ ପାଇଲା ବାରତା । ମନରେ କଲା ଗୁରୁ ଚିନ୍ତା ।
ଏମନ୍ତେ କଂସ ଯେ ଝୁରଇ । ନିଶି ଦିବସେ ନିଦ୍ରା ନାହିଁ ।
ପାତ୍ର ମନ୍ତ୍ରୀଙ୍କି ଡକାଇଣ । କହନ୍ତି ମଥୁରା ରାଜନ ।
କହ ହେ କି ବୁଦ୍ଧି କରିବି । କୃଷ୍ଣଙ୍କୁ କେମନ୍ତେ ମାରିବି ।
ଅକ୍ରୂର ଯୋଡ଼ି ବେନିକର । କହଇ ଶୁଣ ନୃପବର ।
ମୋହର ବୋଲ ବେଗେ କର । ଦୂତ ବରଗ ଗୋପପୁର ।
ଫୁଲ ଯେ ମାଗ ଶତେଭାର । କାଳିନ୍ଦୀ ଯିବେ ଚକ୍ରଧର ।
ବଡ଼ ହୁରିଅ ନନ୍ଦଗୃଷ୍ଠ । ଶ୍ରବଣେ ହୋଇବ ଉଚ୍ଚାଟ ।
ଯିବେ ସେ ପଦ୍ମଫୁଲ ତୋଳି । ଧରି ଗିଳିବ ତାକୁ କାଳୀ ।
କାଳୀ ଗିଳିବ ଦେବସ୍ୱୟେ । ତୁମ୍ଭର ଯିବ ଶତ୍ରୁ ଭୟେ ।
ଏକଥା ତୁମ୍ଭେ ମନେ ଭାଳ । ତୁମ୍ଭର ମରିବନ୍ତି କାଳ ।
ଅକ୍ରୂର ବଚନ ଶୁଣିଲା । କଂସ ଯେ ଶ୍ରୀହସ୍ତେ ଲେଖିଲା ।
ଅଦ୍ୟରେ ଶିଘ୍ର ଶିଘ୍ର ବାଣୀ । ପ୍ରେରିତ କଂସ ନୃପମଣି ।
ଶୁଣିରେ କୃଷ୍ଣ ହଳଧର । ଗ୍ରାମ୍ୟ ଚଣ୍ଡାଳ ଶୁଣ ମୋର ।
ମୁଁ ଅଟେ ରାଜା କଂସାସୁର । ତୋହର ନାହିଁ କିରେ ଡର ।
ଶୁଣିରେ ନନ୍ଦ ତୁ ଗଉଡ । ତୁହି ଗୋପରେ ହେଲୁ ବଡ଼ ।

ପଦ୍ମ ଯେ ଶତେଭାର ଦେବୁ । ନିଃଶଙ୍କେ ଗୋପପୁରେ ଥିବୁ ।
ନ ଦେଲେ ଗୋପକୁ ମୁଁ ଯିବ । ରାମ କୃଷ୍ଣଙ୍କୁ ବିନାଶିବ ।
ଗୋପୀ ଗୋପାଳ ଆଦି ଯେତେ । ଘଉଡ଼ିବରିଁ ଗୋପୁଁ ସତ୍ୟେ ।
ଏଡ଼େବେ ଗରବ ତୁମ୍ଭର । ମୋତେ କି ନାହିଁ ତବ ଡର ।
ଗୋପରେ ଯେତେକ ଗୁଆଳୀ । ସବୁ ହରିଲ୍ ବନମାଳୀ ।
ମାରିଲ୍ ଅଷ୍ଟ ସେନାପତି । ଏତେବେ ଦମ୍ଭ ତୋର ଛତି ।
କହୁଛୁ କୁସ୍ତିର ଅନ୍ୟାୟ । ଜାଣି ଶୋଇଛୁ ତୁ ନିର୍ଭୟ ।
କରିଛୁ ନନ୍ଦ ବଡ଼ ଠାଣି । ଭାଙ୍ଗିବି ତୋର ଅଣ୍ଟପଣ ।
ମୋତେ ଯେ ଈଶ୍ୱର ଡରନ୍ତି । ବ୍ରହ୍ମ ଯେ ଚରଣେ ଖଟନ୍ତି ।
ଜଗତେ ଅଟଇ ମୁଁ ରାଜା । ସର୍ବେ ଅଟନ୍ତି ମୋର ପ୍ରଜା ।
ଭଣଜା ହୋଇଥିଲେ ମୋର । ପଦ୍ମ ଯେ ଦେବୁ ଶତେ ଭାର ।
ଜାଣିବି ତୋର ଉପକାର । ଯେବେ ବାନ୍ଧବ ଥିବୁ ମୋର ।
ଜୀବନେ ଆଶା ଯେବେ ଥିବ । କମଳ ଶତେଭାର ଦେବ ।
ନ ଦେଲେ ପଦ୍ମପୁଷ୍ପ ତୁହି । ପ୍ରାଣେ ମରିବ ବେନି ଭାଇ ।
ଏମନ୍ତେ ଚିଠାଙ୍କ ଲେଖିଲ । ଚନ୍ଦନପଙ୍କେ ମୁଦ ହେଲ ।
ମନେ ବିଚାରେ କଂସାସୁର । ବଇରୀ ମଲେ ଯିବ ଡର ।
ତେବେ ଧର୍ମ ମୋତେ ସାହା ହୁଅ । କାଳୀର ମୁଖେ କୃଷ୍ଣ ଦିଅ ।
ଚିଠାଟି ମୁଦ କଂସ ରାୟ । ମାନସେ ହରଷ ହୃଦୟ ।
ଅକ୍ରୁରେ ରାଇ ଆଜ୍ଞା ଦେଲ । ଗୋପକୁ ଯାଅରେ ବୋଇଲ ।
ନନ୍ଦକୁ ଏ ଚିଠାଟି ଦେବୁ । ଏଥିରେ ହେଳା ନ କରିବୁ ।
ତହୁଁ ଅକ୍ରୁର ପତ୍ର ନେଲ । ସାନନ୍ଦେ ଶିରରେ ଛୁଇଁଲ ।
କଂସକୁ ନମସ୍କାର କଲ । ଅକ୍ରୁର ରଥରେ ବସିଲ ।
ଗୋପକୁ ରଥ ବୁହାଇଲ । ଯମୁନା ତଟରେ ମିଳିଲ ।
ବହନେ ସ୍ନାନ ଶେଷ କରି । ବେଗେ ଚଳିଲ ଗୋପପୁରୀ ।
ଗୋପରେ ପ୍ରବେଶ ହୋଇଲ । ଦାଣ୍ଡରେ ରଥ ରଖାଇଲ ।

ସର୍ବ ଗୋପାଳେ ଏକ ମେଳ । ସାନନ୍ଦେ କରୁଛନ୍ତି କେଳି ।
ନନ୍ଦ ବସିଛନ୍ତି ପିଢ଼ା ମାଡ଼ି । ଗୋପାଳେଛନ୍ତି ତାଙ୍କୁ ବେଢ଼ି ।
ଏକାଳେ ଅକ୍ରୂର ମିଳିଲା । ଦର୍ଶନେ ନନ୍ଦ ଯେ ଉଠିଲା ।
ତହୁଁ ଅକ୍ରୂର ପତ୍ର ଦେଲା । କଂସର ଶ୍ରୀ ଆଜ୍ଞା ବୋଇଲା ।
ନନ୍ଦ ତା ଶିରରେ ଛୁଇଁଲା । ଶିରେ ଲଗାଇ ପାଠକଲା ।
ଅଦ୍ୟରେ ଲିଖି ଲିଖି ବାଣୀ । ପ୍ରେରିତ କଂସ ନୃପମଣି ।
ଶୁଣରେ କୃଷ୍ଣ ହଳଧର । ଶୀଘ୍ରାଜ ହୁଅ ତୁ ଗୋଚର ।
ପଦ୍ମ ଯେ ଦେବୁ ଶତେ ଭାର । ନିର୍ଭୟେ ଥିବୁ ଗୋପପୁର ।
ନ ଦେଲେ ଗୋପକୁ ମୁଁ ଯିବି । ସକଳ ଭାଇଙ୍କି ବିନାଶିବି ।
ମାଇଲି ଅଷ୍ଟ ସେନାପତି । ଏଡ଼େ ଦମ୍ଭ ରେ ତବ ଛାତି ।
ନନ୍ଦ ଯେ ଭାବିଅଛୁ ଟାଣ । ଭାଙ୍ଗିବି ତାର ଅଣ୍ଟପଣ ।
ଗୋଷ୍ଠୁଁ ଗୋପାଳ ଘଉଡ଼ିବି । ଗୋପକୁ ଜୁଇ କରି ନେବି ।
କଂସର ଶ୍ରୀଆଜ୍ଞା ଶୁଣିଲା । ନନ୍ଦ ଯେ ଜ୍ଞାନ ହରାଇଲା ।
ଗୋପାଳେ ତୋଳଣି ଧରିଲେ । ସଚେତ କରି ବସାଇଲେ ।
ଚେତନା ପାଇଲାକ ନନ୍ଦ । ବୋଇଲା ଅହା ମୋ ଗୋବିନ୍ଦ ।
ନନ୍ଦ ଯେ କରଇ ରୋଦନ । ହା ପୁତ୍ର ଅନ୍ଧର ନୟନ ।
ଏବେ ମୁଁ କି ବୁଦ୍ଧି କରିବି । କେଉଁ ରାଜ୍ୟକୁ ପଳାଇବି ।
ଚଉଦ ଭୁବନେ ନିରତ । କଂସର ଦରପ ବିଦିତ ।
କାହିଁରେ ଲୁଚାଇବି ତୋତେ । ଦଇବା ତ କଲା କଂସ ମୋତେ ।
ଗୋପାଳ କହନ୍ତି ବଚନ । କି ବୁଦ୍ଧି କରିବା ରାଜନ ।
ବାଳୁତ ପୁଅ ବନମାଳୀ । ସେ କି ଜାଣନ୍ତି ଫୁଲ ତୋଳି ।
ଆମ୍ଭେ ଯେ ତେଜିବୁ ଜୀବନ । ହେଲେ କରିବୁ ବିଷପାନ ।
ଅକ୍ରୂର ବାହୁଡ଼ିଣ ଯାଇ । କଂସ ରାଜାକୁ ଯାଇ କହି ।
କଂସ ହୋଇଲେ କୋପ ମୁଖୀ । ପଳାଇ ଯିବା ଗୋପଯାକ ।
ଅକ୍ରୂର ବୋଲଇ ବଚନ । ଗଉଡ଼େ କେତେ କର ଟାଣ ॥

ତୁମ୍ଭେ ଯେ ବାଣାର ବାଢ଼ୁଅ । କହୁଛ କଇଣ ଅଡ଼ୁଆ ।
କଂସକୁ ଜାଣି ଅଛ ଠିକ । କହୁଛ ଏ ଠାଣ କାହିଁକି ।
ଯେ ଦନୁ ଜନ୍ମ ନାରାୟଣ । ସେ ଦନୁ ନ ଦଅରେ ଧନ ।
ମାଣ ଗଉଣି ଗଣାଗଣି । କଉଡ଼ିନ ନ ଦଅରେ ଗଣି ।
କଂସ ରାଜାକୁ ନାହିଁ ଡର । ଏଡ଼େରେ ଗରବ ତୁମ୍ଭର ।
ଅକ୍ରୁର ଗୋପାଳଙ୍କ କଳି । ଖେଳୁ ଯେ ଥିଲେ ବନମାଳୀ ।
ସେ ଅନ୍ତର୍ଯାମୀ ଭଗବାନ । ଜାଣିଲେ ଅକ୍ରୁରର ମନ ।
ଅଇଲେ ନାଚି ଛଳ ଛଳ । ହସ୍ତରେ ମାରି କରତାଳି ।
ଅସିଣ ମିଳଲେ ସତ୍ୱରେ । ବସିଲେ ନନ୍ଦର କୋଳରେ ।
ଅକ୍ରୁର ଗଉଡ଼ଙ୍କ କଳି । ଦେଖି ବୋଲନ୍ତି ବନମାଳୀ ।
କହନ୍ତି ପ୍ରଭୁ ନନ୍ଦ ଶିଷି । ଅକ୍ରୁର ଅଛୁ କମା ଅସି ।
ନନ୍ଦ ବୋଲନ୍ତି ଶୁଣ ବାବୁ । ତୋ ହସ୍ତେ ପୁଷ୍ପ ତୋଳିଦେବୁ ।
ଯେବେ ରହିବୁ ଗୋପପୁର । ପଦ୍ମ ଯେ ଦେବୁ ଶତେଭାର ।
ନ ଦେଲେ କଂସ ଯେ ଅସିବ । ବେଳା ଭାଇଙ୍କି ବନାଶିବ ।
ଏମନ୍ତେ ପ୍ରତିଜ୍ଞା ସେ କରି । ଲେଖିଛୁ କଂସ ଦଣ୍ଡଧାରୀ ।
କାଳନ୍ଦୀ ଜଳେ କାଳୀ ବସା । ତହିଁକି କାହାର ଭରସା ।
ମାନବେ ବାଟେ ନ ଚଳନ୍ତି । ବ୍ରହ୍ମା ଯେ ଈଶ୍ୱର ଡରନ୍ତି ।
ସେ ହ୍ରଦେ ଫୁଲର ଗୋଠିକି । ସହସ୍ର ସର୍ପର ଭେକ ।
କାଳନ୍ଦ ମେର ବଡ଼ ଭୟ । ତୁମ୍ଭେ ମୋ ବାଳୁତ ତନୟ ।
ଅବର କଂସକୁ ମୋ ଡର । ବୁଦ୍ଧି ନ ସ୍ଫୁରେ ଚକ୍ରଧର ।
କହନ୍ତି କାନ୍ଦ କାନ୍ଦ ନନ୍ଦ । ଶୁଣି କହନ୍ତି ଅଦୁକନ୍ଦ ।
ଯାହା ସେ କରବ ବିଧାତା । କମ୍ପାଇଁ କର ମନେ ଚିନ୍ତା ।
ଦୁଷ୍ଟ ମନୁଷ୍ୟ ଯେଉଁ ନର । ତା ପଦେ କୋଟି ନମସ୍କାର ।
ସେ ଅଟେ ଜାତରେ ଅସୁର । ସମ୍ବନ୍ଧ ରସ ନାହିଁ ତାର ।
ଏମନ୍ତେ କାଳନ୍ଦୀ ନ ଯିବ । କଂସର ବୋଲ କ ଭାଙ୍ଗିବ ।

ସେ ଅମ୍ଭ ସୋଦର ମଉଳା । ତା ବୋଲ ନ କରବ ହେଳା ।
ଅକ୍ରୂର ବାହୁଡ଼ଣ ଯାଇ । କଂସ ରାଜାକୁ ଯାଇ କହୁ ।
ବୋଲିବ ଗଲେ ଫୁଲ ତୋଳ । ତୋତେ ଡରିଲେ ବନମାଳୀ ।
କହିବ ରାଜାଙ୍କ ଛାମୁରେ । ଗଲେ ସେ କାଳନ୍ଦୀ ଭିତରେ ।
ଅକ୍ରୂର କୃଷ୍ଣ ସଙ୍ଗେ କଥା । ଯଶୋଦା ପାଇଲା ବାରତା ।
ସକଳ ପାଇଛି ପଚାରି । ସତ୍ୱରେ ମିଳିଲେକ ଯାଇ ।
କୃଷ୍ଣଙ୍କ ଘେନିଣ କୋଳର । ଲୁହ ବହଇ ଝର ଝର ।
ଅହୋ ମୋ ରାମ ନରହରି । କଂସର ହୋଇଲୁ ବଇରୀ ।
କେଉଁ ରାଜ୍ୟକୁ ପଳାଇବୁ । ତୁମ୍ଭଙ୍କୁ କାହିଁ ଲୁଚାଇବୁ ।
ପୋଡ଼ୁ ମୋ ଗାଈ ଗୋରୁ ଧନ । ତୁ ମୋର ଦୁଃଖିର ଜୀବନ ।
ନନ୍ଦ ଯେ ବୋଲ ନ କରଇ । ପଳାଇ ଯିବା ବାପ ଭାଇ ।
ଗୋପ ଯେ ଛାଡ଼ି ପଳାଇବା । ଗିରିବର ଗହ୍ୱରେ ଲୁଚିବା ।
କୃଷ୍ଣଙ୍କ ତଅରନ୍ତ ମାତା । ଗୋପୀଏ ପାଇଲେ ବାରତା ।
ଛେକିଲେ ଘର ଦ୍ୱାର ଧନ । ଧାଇଁଲେ ସର୍ବ ଗୋପୀଜନ ।
ରାଧିକା ସହିତେ ଧାଇଁଲେ । କୃଷ୍ଣଙ୍କ ଯାଇଣ ଭେଟିଲେ ।
କେ ଯାଇ ଧରନ୍ତେ ଶ୍ରୀହସ୍ତ । କାହନ୍ତ ନ ଯା ଗୋପୀନାଥ ।
କେହୁ ବୋଲନ୍ତି ବନମାଳୀ । ଅମ୍ଭ ସଙ୍ଗରେ ଥିଲୁ ମେଳି ।
ସେ ଫୁଲେ କାଳୀ ଅଧିଷ୍ଠେ । ନାଗୁଣୀ ବଳ ପୁରୁଛନ୍ତି ।
ପଙ୍କ ଅଟଇ ସାତତାଳ । ଚଉଦ ତାଳ ଅଟେ ଜଳ ।
ତୁ ହର କର ଅମ୍ଭ ବୋଲ । ତହିଁରେ ନାହିଁ ଥଳ କୂଳ ।
ଦେବତାଗଣେ ଯେ ଡରନ୍ତି । ମାନବେ ବାଟ ନ ଚଳନ୍ତି ।
ଆକାଶେ ସୂର୍ଯ୍ୟ ବୁଲି ଯାନ୍ତି । ପକ୍ଷୀଏ ଉଡ଼ି ନ ପାରନ୍ତି ।
ଏମନ୍ତେ କାଳୀ ବିଷ ଜ୍ୱାଳା । ତୁମ୍ଭେ ନ ଯାଅ ନନ୍ଦବାଳା ।
ଭାବନ୍ତି ତୋତେ ମୁନିଗଣ । ଦାସବତ୍ସଳ ଭଗବାନ ।
କି ଯୋଗେ କରିଥିଲୁ ତପ । ତେଣୁ ଲଭିଲୁ ଘୋର ତାପ ।

ଏବେହେଁ ଛାଡ଼ିଲଟି ଦୟା । ଅମ୍ଭଙ୍କୁ ଛାଡ଼ିଲଟି ମାୟା ।
ଦଣ୍ଡେ ନ ଦେଖି ତୋ ବଦନ । ପିଣ୍ଡରେ ନ ରହେ ପରାଣ ।
ସକଳ ଜଞ୍ଜାଳ ଛାଡ଼ିଲୁ । ତୋର ସଙ୍ଗତେ ପ୍ରୀତି କଲୁ ।
କ୍ଷୀର ଲବଣୀ ଦଧି ସର । ଭୁଞ୍ଜାଉଥିଲୁଁ ଚକ୍ରଧର ।
ପାଦେ ପଡ଼ିଲେ ସର୍ବେ ବାଳୀ । ନ ଯାଅ ପଦ୍ମଫୁଲ ତୋଳି ।
ଏବେ ଯେ କି ବୁଦ୍ଧି କରବୁ । କେମନ୍ତେ ଏ ଦେହ ଧରବୁ ।
ଶୁଣି ବୋଲନ୍ତି ବନମାଳୀ । ଶୁଣ ଗୋ ସର୍ବେ ଗୋପବାଳୀ ।
ତୁମ୍ଭେ ଗୋ ନ କରବ ଚିନ୍ତା । ଯାହା ସେ ଲେଖିଛନ୍ତି ବିଧାତା ॥
କଂସତ ହୋଇବ ଉଦାସି । ଅମ୍ଭର ଅଛୁ ପାଞ୍ଚକର
କିମ୍ପା ମୁଁ ଫୁଲକୁ ନ ଯିବି । ମାମୁର ବୋଲକୁ ଭାଙ୍ଗିବି ।
ଦ୍ୱାଦଶ ଷୋଡ଼ଶୀ ତା ବଳ । ଗୃହନ୍ତେ ମଧ୍ୟେ ଟଳମଳ
ଚଉଦ ଭୁବନ ଜିଣିଲା । ଚରଣ ତଳେ ଘୋଟାଇଲା ।
ଚଉଦ ଭୁବନର ନାରୀ । ସର୍ବେ ତା ଛତ୍ର ପୁରେ ଭରି ।
ଈଶ୍ୱର ଦେବତା ଡରନ୍ତି । ବ୍ରହ୍ମା ଯେ ଚରଣେ ଘୋଟନ୍ତି ।
ଫେଡ଼ିଲେ ସ୍ୱର୍ଗର କବାଟ । ସ୍ୱର୍ଗକୁ ଯାଏ ତାର ଥାଟ ।
ପଶିଲେ ଅମର ଚଉକା । ହରିଲା ଅମର ନାୟିକା ।
କଂସର ଏଡ଼େ ପରାକ୍ରମ । ତାକୁ କେ ହୋଇବ ଯେ କ୍ଷମ
ଫୁଲ ନ ଦେଲେ କଂସାସୁର । ଚୁର କରିବ ଗୋପପୁର ।
ଶୁଣି ବୋଲନ୍ତି ବ୍ରଜବାଳୀ । ଶୁଣ ହେ ପ୍ରଭୁ ବନମାଳୀ ।
ଅକ୍ରୁର ବାହୁଡ଼ିଣ ଯାଉ । କଂସ ରଜାକୁ ଯାଇ କହୁ ।
ତୋତେ ଯେ ଘେନି ପଳାଇବୁ । ଅରଣ୍ୟ ଗିରିରେ ଲୁଚିବୁ ।
ହସି ବୋଲନ୍ତି ବନମାଳୀ । ଶୁଣ ଗୋ ସର୍ବ ଗୋପବାଳୀ ।
ପଳାଇ ଲୁଚିବା ଗୋ କାହିଁ । ତିନି ଭୁବନେ ଠାବ ନାହିଁ ।
ଚଉଦ ଭୁବନେ ଯେ ଦେଶ । କଂସର ତେଜ ପରକାଶ ।
ଦ୍ରୁମିଳା ନାମରେ ଅସୁର । ତାହାର ପୁତ୍ର କଂସାସୁର ।

ତାହାଙ୍କୁ ମୋର ଡର ଗୋ ଏ । ସ୍ୱର୍ଗେ ଡରନ୍ତି ଦେବତାଏ ।  
କାଳୀଙ୍କି ନାହିଁ ଡର ମୋର । ମୋ ନାମ ଜଗତ ଈଶ୍ୱର ।  
ପଡ଼ିଲେ କାଳୀଙ୍କ ମାରିବ । ମହୀରେ ଯଶ ରଖାଇବ ।  
ତୁମ୍ଭେ ଗୋ ଷୋଳସସ୍ର ବାଳୀ । ମୁଁ ଏକା ପ୍ରଭୁ ବନମାଳୀ ।  
ସେ କଥା ତୁମ୍ଭ ମନେ ନାହିଁ । କେବଳ ରତି ରସେ ଧାଇଁ ।  
ବାଳୁତ କାଳୁ ଅଜଯାଏ । ପଣ୍ଡିଲ୍ଲ ସ୍ୱପତ୍ତି ଗୋ ଗୋଏ ।  
ଶ୍ରୀହରି ଗୋପୀଙ୍କର କଥା । ଶଉଡ଼େ ବାନ୍ଧଛନ୍ତି ମଥା ।  
ଗୋପୀ ବୋଲନ୍ତି ମହାବାହୁ । ଏମନ୍ତ କଥା କିମ୍ପା କହୁ ।  
ସେତଯୁ ଯୁଗୁଁ ବର ତୋରେ । ଜନମ ପାଇଛୁ ଗୋପରେ ।  
ତୁମ୍ଭେ ଯେ ଅନ୍ଧର ନୟନ । ତବ ବିରହେ ଯିବ ପ୍ରାଣ ।  
ଏମନ୍ତେ ଗୋପୀଙ୍କ ବିରସ । ବଦନ ଦେଖିଲେ ରମେଶ ।  
ସ୍ତମ୍ଭନ ଉଚ୍ଚାଟନ ବଶ୍ୟ । ମୋହନ କଲେ ହୃଷୀକେଶ ।  
ଏମନ୍ତେ କେତେ ଗୂଢ଼ କହି । ମନ ମୋହିଲେ ବ୍ରଜ ଗୋଈ ।  
ଥାଅ ଗୋ ତୁମ୍ଭେ ବ୍ରଜବାଳୀ । ଅମ୍ଭେ ଗମୁଛୁ ପଦ୍ମ ତୋଳି ।  
ଗୋପୀ ବୋଲନ୍ତି ଯାଅ ହରି । ମଙ୍ଗଳ କରନ୍ତୁ ତଉସ୍ୱି ।  
ଏମନ୍ତେ କହୁଛନ୍ତି ହରି । ଶୁଣ ମୋ କଥା ବନମାଳୀ ॥  
କାଲି ମୁଁ ଦେଖିଛୁ ସ୍ୱପନ । କାଳୀୟ ଦଂଶିବ ଚରଣ ।  
ମୋହର ବୋଲ ବେଗେ କର । ନ ଗମ କାଳନ୍ଦୀ କଳର ।  
କଂସ ଯା କନ୍ଧାର କରୁ । ଏ ଗୋପପୁରଯାକ ମରୁ ।  
ସେଥିକି ନାହିଁ ମୋ ଶୋଚନା । ଶ୍ରୀହରି ଘେନ ମୋର ମନା ।  
ହସି ବୋଲନ୍ତି ବନମାଳୀ । ଯିବି ମୁଁ ପଦ୍ମପୁଷ୍ପ ତୋଳି ।  
ଯେ କଥା ଥିବ ମୋ କପାଳେ । ତାହା ଘଟିବ ଅବହେଳେ ।  
ସାହାସ କେତେ କାଳୀୟର । ଦେଖିବ ଅଜ କାଳନ୍ଦୀର ॥  
ଏମନ୍ତେ ଶ୍ରୀ ମଧୁସୂଦନ । କାଳନ୍ଦୀ କୂଳକୁ ଗମନ ।  
ତା ଶୁଣି ପ୍ରଭୁ ଚଳିଗଲେ । ଅଦ ବ୍ରୁ ପାଶରେ ମିଳିଲେ ।

ଅକ୍ରୂର ମଥୁରାକୁ ଯାଅ । କଂସ ରାଜାକୁ ଯାଇ କହ ।
ବୋଲନ୍ତୁ ଗଲେ ଫୁଲ ତୋଳି । ତୋତେ ଡରିଲେ ବନମାଳୀ ।
ଶ୍ରୀକୃଷ୍ଣ ବଚନେ ଅକ୍ରୂର । ଗଲେ ସେ ମଥୁରା ନଗର ।
କଂସ ଯେ ଜଗତୀରେ ଥାଇ । ଚଉଦଗକୁ ଅଛି ଚାହିଁ ।
ଅକ୍ରୂର ସନ୍ନିଧେ ମିଳିଲା । କର ଯୋଡ଼ିଣ ଜଣାଇଲା ।
ହେ ଦେବ କଂସ ନୃପରାୟ । ତୋତେ ଡରିଲା ନନ୍ଦପୁଅ ।
ତୋ ନାମ ଶୁଣି ଭୟ କଲେ । ଜଳକୁ ଫୁଲ ତୋଳିଗଲେ ।
ଶୁଣି ସାନନ୍ଦ ହେଲା କଂସ । ବହୁରେ ହେବ ଶତ୍ରୁନାଶ ।
ହେ ଚଣ୍ଡୀ ମୋତେ ସାହା ହୁଅ । କାଳୀର ମୁଖେ କୃଷ୍ଣ ଦିଅ ।
ଆଜୁ ମୋ ହୃଦୟରୁ ଭୟ । କାଳୀର ମୁଖେ ହେଉ କ୍ଷୟ ।
ଏମନ୍ତେ ମନାସଇ କଂସ । ମାନସେ ହୋଇଲା ହରଷ ।
ପରର ମନ୍ଦ ଯେ ପାଞ୍ଚଇ । ଦଇବ ତାହାକୁ ମାରଇ ।
ସୁଜନେ ମନେ କର ବୁଝି । ହିଂସା କପଟ ଆଦି ତେଜି ।
କଂସର ଏମନ୍ତେ ଦୁର୍ବୁଦ୍ଧି । ହୃଦେ ଲାଗିଛି ମୃତ୍ୟୁ ବ୍ୟାଧି ॥
ସେ ପ୍ରଭୁ ଶଙ୍ଖ ଚକ୍ରଧର । ବିନାଶ ପାଞ୍ଚେ କଂସାସୁର ।
ଏହା ଯେ ବିଷ୍ଣୁର ପୁରାଣ । କାଳୀଦଳନ କଥା ଶୁଣ ।
ଯେହୁ ଶୁଣନ୍ତି କୃଷ୍ଣ କଥା । ଛାଡ଼ଇ ପୁଣ କଷ୍ଟ ବ୍ୟଥା ।
ଯେହୁ ଶୁଣନ୍ତି ହରି ଭାବ । ତାହାଙ୍କୁ ବଇକୁଣ୍ଠେ ଠାବ ।
ଶୁଣିବ କୃଷ୍ଣଙ୍କ ପୁରାଣ । ଦକ୍ଷିଣ ହସ୍ତେ ଦେବ ଦାନ ।
ଗୁରୁ ବୈଷ୍ଣବ ବିପ୍ରଜନେ । ପୂଜିବ ତାଙ୍କର ଚରଣେ ।
ଯେ ଅଭ୍ୟାଗତେ ଦୟା ବହୁ । ଗତ ମୁକତି ସେ ଲଭଇ ।
ତା ହୃଦେ ବିଷ୍ଣୁ ପରକାଶ । ସେହୁ ଲଭଇ ସ୍ୱର୍ଗବାସ ।
ହରିଙ୍କି ତୁମ୍ଭେ ନିତ୍ୟେ ଭଜ । ସକଳ ପୂର୍ଣ୍ଣ ହେବ କାର୍ଯ୍ୟ ।
ଭକ୍ତିରେ ମନ୍ତ୍ର ଯେ ଶୁଣିବ । ବାଞ୍ଛିତ ଫଳ ପ୍ରାପ୍ତ ହେବ ।
ଶୂଦ୍ରାଦି ମୁଖରୁ ଶୁଣିଲେ । ପାପ ଅପାର ହୁଏ ଭଲେ ।

କେବଳ ଶୁଣିଲେ କି ହେବ । ଅନ୍ତରେ ପ୍ରଭୁ ନାମ ନେବ ।
ମୂଳଟି ଅଟଇ ବିଶ୍ୱାସ । କହଇ ନୀଳାମ୍ବର ଦାସ ।

ଇତି ଶ୍ରୀ ପଦ୍ମତୋଳା ପୁରାଣେ ଅକ୍ରୁର ଗୋପ ଗମନେ ପ୍ରବେଶ କଂସ ସନ୍ନିଧାନେ ଶ୍ରୀକୃଷ୍ଣ କାଳିନ୍ଦୀ ଗମନେ ନାମ ଦ୍ୱିତୀୟୋଽଧ୍ୟାୟ

—୦—

## ତୃତୀୟ ଅଧ୍ୟାୟ

ଶୁକ କହନ୍ତି ରାୟେ ଶୁଣ । କାଳନ୍ଦୀ ଚରିତ ବିଧାନ ।
ଶ୍ରୀକୃଷ୍ଣ କାଳନ୍ଦୀକୁ ସଜ । କରିବେ ଦେବତାଙ୍କ କାର୍ଯ୍ୟ ।
ପୁଚ୍ଛନ୍ତି ରାଇ ବନମାଳୀ । କେ ସଙ୍ଗେ ଯିବ ଫୁଲ ତୋଳି ।
ବାଳକେ ହରି ଅଜ୍ଞା ପାଇ । ଘରକୁ ଗଲେ ବେଗେ ଧାଇଁ ।
ସଜ ହୋଇଲେ ନନ୍ଦ ଗୃହେ । ପିନ୍ଧିଲେ ପୀତାମ୍ବର ପାଟ ।
କଟିରେ ରତ୍ନ ଓଡ଼ିଆଣି । ହରି ଯେ ମୁକୁତା ଖଞ୍ଜଣୀ ।
କର୍ଣ୍ଣରେ ଝଲକେ କୁଣ୍ଡଳ । ହୃଦରେ ମଣି ରତ୍ନମାଳ ।
ହସ୍ତରେ କାଙ୍କେଟି ବାହୁଟି । ଦଶନ୍ତି ଯଥାଦ ନୃପତି ।
ପଦ୍ମରେ ରତ୍ନର କଠାଉ । ହୀରା ମାଣିକ୍ୟ ଦାଉ ଦାଉ ।
ତାଳୁରେ କେକୀପୁଚ୍ଛ ଚୂଳ । ବେଢ଼ାଇ ଚଳେ ରତ୍ନମାଳ ।
ଶ୍ରୀ ହସ୍ତେ ଘେନି ସିଂହା ବେଣୁ । ମୁରଲୀ ଧ୍ୱନି କଲେ କାହ୍ନୁ ।
ସଜ ହୋଇଲେ ବଳରାମ । କୋଟିଏ ସିଂହର ପ୍ରାକ୍ରମ ।
ଗୋପାଳ ପୁଏ ସଜ ହୋଇ । କୃଷ୍ଣଙ୍କୁ ବେଢ଼ିଲେକ ଯାଇ ।
ଚନ୍ଦ୍ରଙ୍କୁ ଯେସନେ ତାରାପନ୍ତି । କୃଷ୍ଣଙ୍କୁ ତେସନେ ବେଢ଼ନ୍ତି ।
ଗୋପୀଏ ଶୋକଭରେ ଭାସି । ଦଇବ ବାମ ହେଲା ଆସି ।
ନନ୍ଦ ଯୋଶଦା ମନେ ଦୁଃଖ । ଚାହାନ୍ତି ରାମ କୃଷ୍ଣ ମୁଖ ।
ଶୁଚନ୍ତି ଶୁଭଲ୍ଲ ଜୟ ଜୟ । ବିଜୟ କଲେ ଦେବରାୟ ।
ପଛେ ଗୋଡ଼ାନ୍ତି ଗୋପୀଜନ । ଡାକନ୍ତି ଅହେ ନନ୍ଦନନ୍ଦନ ।

କହନ୍ତି ପ୍ରଭୁ ଜନାର୍ଦ୍ଦନ । ଶୁଣ ସମସ୍ତ ଗୋପୀଜନ ।
କର୍ମା ଭଜୁଛ ସର୍ବେ ବାଳୁ । କାଳନ୍ଦୀ ଦେଖିଣ ଅସିବୁ ।
ଶ୍ରୀକୃଷ୍ଣ କହାନ୍ତି ଯେ ବାଟ । ସଙ୍ଗରେଛନ୍ତି ଗୋପୀଗୃଠ ।
ଶିଙ୍ଗା ମୁରଲୀ ଘୋରନାଦ । ଶ୍ରବଣେ ପଥିକ ସ୍ତବଧ ।
ସଙ୍ଗରେ ଗୋଡ଼ାଇ ଅଛନ୍ତି । ଗୋପୀଏ ଏ ଗୀର ଭାଷନ୍ତି ।
ତୁମ୍ଭ ସଙ୍ଗତେ ଅମ୍ଭେ ଯିବା । କାଳନ୍ଦୀ ଜଳ ଯେ ଦେଖିବା ।
ଶ୍ରୀକୃଷ୍ଣ ବୋଲନ୍ତି ଶୋ ଶୁଣ । ଷୋଳ ସହସ୍ର ଗୋପୀଜନ ।
ମୁଁ ଏକା ଯିବି ଫୁଲ ତୋଳି । ନ ଯାଅ ଷୋଳସସ୍ର ବାଳୀ ।
ଏହା ଶ୍ରବଣେ ଗୋପୀଜନ । କହନ୍ତି ବିନୟ ବଚନ ॥
ତୁମ୍ଭେ ଯେ ଦୁଃଖିର ଜୀବନ । ଅମ୍ଭେ ତୁମ୍ଭର ପଞ୍ଚପ୍ରାଣ ।
ପିଣ୍ଡର ଅଟ ହେ କରତା । ଅମ୍ଭମାନଙ୍କ ମୁକ୍ତି ଦାତା ।
ଅମ୍ଭଙ୍କୁ ନ ନେଲେ ରମେଶ । ତେଜବୁ ପ୍ରାଣ ଖାଇ ବିଷ ।
ତା ଶୁଣି ପ୍ରଭୁ ନାରାୟଣ । ଗୋପୀଙ୍କୁ କହିଲେ ସାନ୍ତ୍ୱନ ।
ଯାତ୍ରାକାଳରେ ଯେ ବାରଣ । କରଇ ଫଳ ନୁହେ ଜାଣ ।
ଅନନ୍ଦେ ଯାଅ ବ୍ରଜବାଳୀ । ଅମ୍ଭେ ଯାଉଁଛୁଁ ଫୁଲ ତୋଳି ।
ଯାହା ସେ କରିବ ବିଧାତା । ମନରେ ନ କରଟି ଚିନ୍ତା ।
ଜନ୍ମରୁ କଂସ ଦୁରାଚାର । ଅମ୍ଭଙ୍କୁ ମଣିଲା ସେ ପର ।
ଗୋପୀଏ ବୋଲନ୍ତି ଶ୍ରୀହରି । ବିଧାତା ହୋଇଲା ଭଗାରି ।
ଚାଲ ଏଠାରୁ ଚାଲିଯିବା । କାଳନ୍ଦୀ ଜଳରେ ମିଳିବା ।
ଏମନ୍ତେ ନାଦ ହରି ହରି । ପଛେ ଗୋଡ଼ାନ୍ତି ବ୍ରଜନାରୀ ।
ଅରଣ୍ୟ ମଧ୍ୟରେ ମିଳିଲେ । ହରି ଶବଦ ତହିଁ କଲେ ।
ଦିବସ ରାତ୍ର ଯେ ଅନ୍ଧାରେ । ଚାଲନ୍ତି ପ୍ରଭୁ ନିଃଶଙ୍କରେ ।
କାହାକୁ ନାହିଁ ତାଙ୍କ ଭୟ । ଯେ ପ୍ରଭୁ ବଡ଼ ଦୟାମୟ ।
ଚାଲନ୍ତି ପର୍ବତ ଉପରେ । ହରି ଶବଦ ନିରନ୍ତରେ ।
ଏକ ଦିବସ ଗତେ ଯୁକ୍ତି । ଚାଲନ୍ତି ପ୍ରଭୁ ନାରାୟଣ ।

ଗୋପକୁ କାଳନ୍ଦୀ ନିକଟ । ଛଅଶ ଯୋଜନର ବାଟ ॥
ଏମନ୍ତେ କାଳନ୍ଦୀ ନିକଟ । ରହିଲେ ପ୍ରଭୁ ନନ୍ଦସୁତ ॥
କ୍ଷଣକେ ଦୂରରୁ ବହୁଣି । ଗୋପସୁତଙ୍କୁ ଏ ବଚନ ॥
କାଳନ୍ଦୀ ଜଳ ଦେଖ ଯାଇ । କେତେ ଯେ ଫୁଲ ଅଛି ତହିଁ ॥
ପ୍ରଭୁଙ୍କ ଆଜ୍ଞା ଧରି ଶିରେ । ଚଳିଲେ ଦେଖିବାକୁ ନୀରେ ॥
କାଳନ୍ଦୀ କୂଳେ ଉଭା ହୋଇ । ଜଳକୁ ଦେଲେ ସେ ଅନାଇଁ ॥
ବହୁତ ଫୁଲ ଯେ ଫୁଟିଛି । ନାଗୁଣୀ ବଳ ପୂରିଅଛି ॥
ଦେଖିଲେ ସର୍ବ ଗୋପସୁତେ । ପୁଷ୍ପକୁ ତୋଳିବା କେମନ୍ତେ ॥
କାଳି ଯେ ଦେଖିଲେ ଆମ୍ଭଙ୍କୁ । ଗିଳିବ ଗୋପାଳ ପୁଅଙ୍କୁ ॥
କହନ୍ତି ସର୍ବ ଗୋପୀଜନ । କାଳୀକି ନ କରିବ ସାନ ॥
ଚାଲ ଏଠାରୁ ଚଳିଯିବା । ପ୍ରଭୁଙ୍କ ପାଶରେ ମିଳିବା ॥
ଗୋପାଳ ସୁତେ ଭୟ କଲେ । ପ୍ରାଣ ଆକୁଳେ ପଳାଇଲେ ॥
ହୁଅନ୍ତି ଥରହର ଦେଖି । ବୋଲନ୍ତି ରଖ ପଦ୍ମଆଖି ॥
ହସି ବୋଲନ୍ତି ଚକ୍ରଧର । କିସରେ ଦେଖିଲ ଜଳର ॥
କମ୍ପା ହେଉଛ ଥର ହର । ମୁଁ ଥିଲେ କାହାକୁ ରେ ଡର ॥
କୁମରେ ବୋଲନ୍ତି ବଚନ । ଶୁଣ ହେ ଜଗତ ଜୀବନ ॥
ଶୁଣ ହେ ପ୍ରଭୁ ଆଦ୍ୟମୂଳ । ଜଳେ ପୂରିଛି ନାଗବଳ ॥
ଗୋପୀ ବୋଲନ୍ତି ବନମାଳୀ । ନ ଯାଅ ପଦ୍ମଫୁଲ ତୋଳି ॥
ଏକା ପୁଷ୍ପକେ ଶତ ସର୍ପ । ପୂରିଣଛନ୍ତି ଏହୁ ରୂପ ॥
ଚାଲ ଏଠାରୁ ପଳାଇବା । ଗୋପରେ ଯାଇଣ ପଶିବା ॥
ହସି ବୋଲନ୍ତି ଦେବରାୟ । ଶୁଣ ହେ ଗୋପାଳ ତନୟ ॥
ଏଠାରୁ ପଳାଇଣ ଯିବା । ଗୋପରେ କି ବୋଲି କହିବା ॥
ଗୋପୀଏ ହାସ୍ୟ ଯେ କରିବେ । ଗୋପାଳେ ଗୋପେନ ହେବେ ॥
ଶବଣେ ତଳପୁର ଲୋକ । କହିବେ ମୋତେ ଧିକ ଧିକ ॥
ଯାହା ସେ ନିନ୍ଦା ମୁଁ ଶୁଣିବି । କାଳୀର ମୁଖରେ ପଶିବି ॥
ହସି ବୋଲନ୍ତି ସର୍ବ ବାଳ । ଯାଅ ତୁ ପଦ୍ମପୁଷ୍ପ ତୋଳ ॥

## ଶ୍ରୀକୃଷ୍ଣ ଉବାଚ

ଶୁଣତରେ ଗୋପାଳ ତନୟ । କାଳିଙ୍କ ନ କରବ ଭୟ ।
କାଳି ସ୍ମରକୁ କମ୍ପା ଡର । ମୋ ନାମ ଜଗତ ଈଶ୍ୱର ।
ସର୍ବଙ୍କ ତଅରେ ମୁରାର । ଜଟିଲେ ପ୍ରଭୁ ନରହର ।
ଦେଖିଲେ ପ୍ରଭୁ ନନ୍ଦବାଳ । କୂଳେ ପୂରିଛୁ ନାଗବଳ ॥
ତିରଣ ଯୋଜନର ଯାଏ । ସର୍ବ ଦଣଇ ପଙ୍କମୟେ ।
ଶ୍ରବଣେ ତୁଣ୍ଡରୁ ଗରଳ । ଫଣା ଟେକନ୍ତି ନାଗବଳୀ ।
କୂଳକୁ ଡେଇଁଣ ପଡ଼ନ୍ତି । ଗୋପାଳ ପୁଏ ଯେ ଡରନ୍ତି ।
କୃଷ୍ଣଙ୍କ ସଙ୍ଗୁ ପଳାଇଲେ । ପର୍ବତ ଗର୍ଭରେ ଲୁଚିଲେ ।
ସେ ସ୍ଥଳେ ବଳରାମ ଥିଲେ । ଭୟରେ ପଳାଇଣ ଗଲେ ।
କେ ଯାଇ କୂପ ଅଡ଼ୁଆଲେ । କେ ଯାଇ ପର୍ବତେ ଲୁଚିଲେ ।
ଏମନ୍ତେ ସର୍ବେ ପଳାଇଲେ । ସେଠାରେ କେହି ନ ରହିଲେ
ଏକା ରହିଲେ ନରହର । ଶ୍ରୀକରେ ଶଙ୍ଖ ଚକ୍ର ଧର ।
ଡେଇଁ ପଡ଼ିଲେ ସେହୁ ଜଳ । ଅସି ବେଢ଼ିଲେ ନାଗବଳେ ।
ଚତୁର୍ଭୁଜ ଯେ ହେଲେ ହର । ଚତୁର ହସ୍ତେ ଯଷ୍ଟି ଧର ।
ଲଜ୍ଝଡ଼ ମେଘର ଗର୍ଜ୍ଜନେ । ସର୍ପେ ଯେ ଉଡ଼ିଲେ ଗଗନେ ।
କେ ଯାଇ କେଉଣେ ଯେ ପଡ଼ନ୍ତି । ଥୋକାଏ ପାଦ ମଗୃଳନ୍ତି ।
ଶତତାଳ ଯେ ଅଛୁ ପଙ୍କ । ମନ୍ଥନ କଲେ ପଦ୍ମମୁଖ ।
ଚଉଦ ତାଳ ଅଛୁ ପାଣି । ହରିଙ୍କି ହେଲା ଅଣ୍ଟୁ ଆଣି ।
ସ୍ୱର୍ଗେ ଦେଖନ୍ତି ଦେବତାଏ । ବୋଲନ୍ତି ଗଲା ଅମ୍ଭ ଭୟେ ।
କାଳିନ୍ଦୀ ଜଳ ଅନ୍ଦୋଳିଲେ । ସବୁ କଳହିଁ ପଙ୍କ କଲେ ।
ହୋଇଣ ମହା ଉଗ୍ରମୂର୍ତ୍ତି । ଶ୍ରୀକରେ କୁସୁମ ତୋଳନ୍ତି ।
ବେନି ହସ୍ତରେ ବେନି ବାଡ଼ । ତୋଳନ୍ତି ପୁଷ୍ପ ଭୟୁ ଏଡ଼ ॥
କାଳୀର ହୋଇଲେ କାଳଦଣ୍ଡ । ଯଥା କୃତାନ୍ତ ଧର ଦଣ୍ଡ ।
ପାପୀଗଣଙ୍କୁ ନାଏ ଧର । ତଥା ସେ କାଳୀର ବଇରୀ ।

ସମସ୍ତ ପୁଷ୍ପ ତୋଳିକରି । କୂଳେ ଉଠିଲେ ନରହରି ॥
ଦେଖିଣ ପୋଏ ଯେ ଧାଇଁଲେ । ଶ୍ରୀକୃଷ୍ଣ ଚରଣେ ଶୋଇଲେ ॥
ବଳରାମ ଯେ ପ୍ରବେଶିଲେ । ଶ୍ରୀକୃଷ୍ଣ କୋଳାଗ୍ରତ କଲେ ॥
ହସି ବୋଲନ୍ତି ଗୋପୀନାଥ । ଶୁଣ ହେ ଗୋପାଳଙ୍କ ସୁତ ॥
ସର୍ପର ମୁଖେ ମୋତେ ଦେଲ । ସରବେ ଘୁଞ୍ଚି ପଳାଇଲ ॥
ଗୋପାଳ ପୁଏ ପଡ଼ିଥିଲେ । ଉଠ ବୋଲିଣ ଆଜ୍ଞାଦେଲେ ॥
ସର୍ବ କୁମର ଉଠି କରି । ନିରେଖି ଗୃହାନ୍ତି ଯେ ବାରି ॥
ତିରଣ ଯୋଜନର ଯାଏ । ସବୁ ଦଶୁଷ୍କ ପଙ୍କମୟେ ॥
ମରଣଛନ୍ତି ସର୍ପମାନେ । ସଂଖ୍ୟା କେ ନ କରେ କଥନେ
ଦେଖନ୍ତି ଗୋପର କୁମର । ଫୁଲ ଯେ ପର୍ବତ ଆକାର ॥
ଦେଖି ବୋଲନ୍ତି ଗୋପପୁଅ । ଧନ୍ୟ ହେ ପ୍ରଭୁ ଦେବରାୟ ॥
ଧନ୍ୟ ହେ କରୁଣାର ସିନ୍ଧୁ । ସାଗର ମଧେ ବନ୍ଧ ବାନ୍ଧୁ ॥
ଯୋଡ଼ିଲେ ପୋଏ ବେନିକର । ମାଇଲ ନାଗୁଣୀ ନିକର ॥
କାଳୀ ଯେ କୋପରେ ଆସିବ । ଧରଣ ଆମ୍ଭଙ୍କୁ ଗିଳିବ ॥
ଚାଲ ଏଠାରୁ ପଳାଇବା । ଗିରିର ଗହ୍ୱରେ ଲୁଚିବା ॥
ରାମ ଯେ ଧରିଛନ୍ତି ହସ୍ତ । ମୋ ବୋଲକର ଗୋପୀନାଥ ॥
କାଳୀକୁ ମୋର ବଡ଼ ଡର । ପଳାଇ ଲୁଚିବା ବନର ॥
ବୋଲନ୍ତି ଯଶୋଦା ତନୟ । ଶୁଣ ହେ ଗୋପାଳଙ୍କ ପୁଅ ॥
ଶୁଣ ହେ ବଳରାମ ଭାଇ । ଯାହା ସେ ଲେଖିଥିବ ବ୍ରହ୍ମ ॥
ଦାଇବ ଘଟସୁକ୍ରମାନ । ପଡ଼ିଲ କାଳିନ୍ଦୀ ମଧ୍ୟେଣ ॥
କେଯ୍ୟକୁ ଅଛ ହେ ମୋର ଭାଇ । ଫୁଲ ସମ୍ପୃତ ହେଲ ନାହିଁ ॥
ଦଣ୍ଡକ ମାତ୍ର ନିଦ୍ରା ଯିବା । ନିଦ୍ରାରୁ ଉଠି ସର୍ବେ ଯିବା ॥
କାହାର ବୋଲ ନ କରିଲ । କାଳିନ୍ଦୀ ହ୍ରଦକୁ ଆଇଲ ।
କମ୍ପାଇ ବାହୁ ବାହୁଡ଼ିବା । କ୍ଷଣେକ ନିଦ୍ରା ଯେ କରିବା ॥
ଦେହକୁ ଲାଗଇ ମୋ ଶ୍ରମ । ଶୁଣ ହେ ଭାଇ ବଳରାମ ॥

କାଳୀୟ ଯେମନ୍ତ ଅସିବ । ନିଦ୍ରା ମୋ ଭଙ୍ଗାଇଣ ଦେବ ।
ପଦ୍ମ ଯେ ଶତେକ ପାରଣ । ଶୋଇଲେ ଦେବ ନାରାୟଣ ।
ପଳାଇ ଯେଉଁ ସର୍ପ ଥିଲେ । ଛାଲକୁ ବାରତା କହିଲେ ।
କାହ୍ନୁ ଏ ମାନବ ଅଇଲା । ନାଗୁଣୀବଳ ତ ମାଇଲା ।
କତ କମଳ ଛିଣ୍ଡାଇଲା । ଜଳ ସର୍ବହିଁ ପଙ୍କ କଲା ।
ସବୁ କମଳ ନେଲା ତୋଳି । ଦେଖ ତୁ ବେଗେ ଯାଇଁ କାଳୀ
କାଳୀ ଯେ କୋପେଣ ଉଠିଲା । ସପ୍ତ ବ୍ରାହ୍ମାଣ୍ଡ କମ୍ପାଇଲା ।
ସ୍ୱର୍ଗେ ଯେ ଦେବତା ଶୁଣିଲେ । ସ୍ୱର୍ଗ ଛାଡ଼ିଣ ପଳାଇଲେ ।
ଈଶ୍ୱର ଦେବତା ଡରିଲେ । ଗଙ୍ଗାର ଭିତରେ ଲୁଚିଲେ ॥
ବ୍ରହ୍ମା ଯେ ଡରେ ଥର ହର । ଲୁଚିଲେ ମେରୁର ଭିତର ।
ସୂର୍ଯ୍ୟ ଦେବତା ଉଇଁଥିଲେ । ସେ କଳା ମେଘରେ ଲୁଚିଲେ ।
କାଳୀ ତା ବିବରୁ ବାହାର । ଆକାଶେ ଲାଗୁଅଛି ଶିର ।
ସ୍ୱର୍ଗ ମଣ୍ଡରେ ବେନି ପ ଟି । ଚୌଦିଗେ ଅନାଏ ଉରାଟି ।
କାଳନ୍ଦୀ କୂଳରେ ହୋଇଲା । ଜଳକୁ ଅନାଇଣ ଦେଲା ।
କାଳନ୍ଦୀ ଜଳ ସବୁ ପଙ୍କ । ଦର୍ଶନେ କାଳୀ କୋପମୁଖ ।
ସର୍ପେ ଯେ ମରଣ ଅଛନ୍ତି । ଦେଖି କାଳୀୟ କୋପମୂର୍ତ୍ତି ।
ପୂର୍ବର କୋଣକୁ ଚାହିଁଲା । କାହାକୁ ଭେଟ ନ ପାଇଲା ।
ପଶ୍ଚିମ ଦିଗକୁ ଚାହିଁଲା । କାହାର ଭେଟ ନ ପାଇଲା ।
ଉତ୍ତର ଦିଗକୁ ଅନାଇଁ । ତେଣେ କାହାକୁ ନ ଦେଖଇ ।
ଦକ୍ଷିଣ ଦିଗକୁ ଚାହିଁଲା । ବହୁତ ଶବଦ ଶୁଭିଲା ।
ଶବଦ ଶୁଣିଣ ଧାଇଁଲା । ନିକଟେ ପ୍ରବେଶ ହୋଇଲା ।
ଦେଖିଣ କୋପ କଲା କାଳୀ । ନିଦେ ଶୋଇଛନ୍ତି ବନମାଳୀ ।
କାଳୀ ଯେ କୋପାନଳ ହେଲା । ଆକାଶେ ଫଣା ଲଗାଇଲା ।
ଗର୍ଜିଲା ଫୁ ଫୁ କାର ସ୍ୱନେ । କମ୍ପିଲେ ସର୍ବେ ତ୍ରିଭୁବନେ ।
ଗୋପ ବାଳକେ ଉଠୁଁ ଥିଲେ । ଭୟରେ ଥରହର ହେଲେ ।

ଦେଖିଣ ବଳରାମ ଭାଇ । କୃଷ୍ଣଙ୍କୁ ତୋଳି ନ ପାରଇ ॥
ଗୋପାଳ ପୁଏ ଥିଲେ ମିଳି । ପ୍ରଭୁଙ୍କୁ ନ ପାରିଲେ ତୋଳି ।
ଭୟରେ ସର୍ବେ ପଳାଇଲେ । ପର୍ବତ ଗର୍ଭରେ ଲୁଚିଲେ ।
ପୁଅଙ୍କୁ ଦେଖିକରି କାଳୀ । ଏକାକେ ପାଖେ ଦେଲା ଗିଳି ।
ଥୋକାଏ ଲୁଚିଥିଲେ ବନେ । କାଳୀ ତା ଗିଳିଲା ବହନେ ।
ଷାଠିଏ ସସ୍ର ଏକଲକ୍ଷ । କାଳି ତା ଗିଳିଲା ପ୍ରତ୍ୟକ୍ଷ ।
ଏତେକ ଗିଳିକରି କାଳୀ । ମିଳିଲା ଯହିଁ ବନମାଳୀ ।
ଶୋଇଛନ୍ତି ତ୍ରୈଲୋକ୍ୟ ସାଇଁ । ଚକ୍ରକୁ ଶିର ତଳେ ଥୋଇ ।
ଦେଖି କାଳୀୟ କୋପକଲା । ଶ୍ରୀପଦ୍ମପାଦରେ ଦଂଶିଲା ।
ବାମପାଦରେ ଦନ୍ତ ମାରି । ହରି ଶରୀରେ ବିଷ ଧାରି ।
ପୁଣି ଲେଉଟି ଚାହେଁ କାଳୀ । ଚହ୍ନିଲା ଏତ ବନମାଳୀ ।
ଶ୍ରୀଶଙ୍ଖ ଚକ୍ରକୁ ଚହ୍ନିଲା । ଶ୍ରୀପାଦପଦ୍ମରେ ପଡ଼ିଲା ।
ମୁଁ ମୂଢ଼ କଲି ମନ୍ଦ କର୍ମ । ଏତ ଅନାଦି ନରୋତ୍ତମ ।
ଦେଇଛନ୍ତି ଶାଢ଼ୀ ଶ୍ରୀପତି । ପଦ୍ମପୃଷ୍ଠରେ ଅଧିପତି ।
ଏବେ ମୁଁ କି ବୁଦ୍ଧି କରିବି । ପଳାଇ କାହିଁ ମୁଁ ଲୁଚିବି ।
ଗୃହ ଦଗରେ ଠାବ ନାହିଁ । ଚକ୍ର ବୁଲଇ ସବୁଠାରେଁ ।
ପାତାଳେ ଲୁଚିଲେ ତୁରିତେ । କୋପିବେ ନାଗରାଜା ମୋତେ
ଏବେ ମୁଁ ମନ୍ଦକର୍ମ କଲି । ଜଗତଠାକୁରେ ମାରିଲି ।
ଚଉଦ ଭୁବନର ହରି । ଜଗତମଧ୍ୟେ ଅଧିକାରୀ ।
ହରିର ଦେହେ ପ୍ରାଣ ନାହିଁ । ଶୋଇଛୁ ବ୍ରହ୍ମାଣ୍ଡ ଗୋସାଇଁ ।
କାଳୀୟ ଦେହ ଥରହର । ମୋତେ ମାରିବେ ଚକ୍ରଧର ।
କେ ଧର୍ମ ରକ୍ଷାକର ମୋତେ । ଯେହ୍ନେ ରଖିବେ ଜଗନ୍ନାଥେ ।
ଅଜ ମୁଁ କି ବୁଦ୍ଧି କରିବି । କଠାଉ ତଳେ ମୁଁ ଲୁଚିବି ।
ଶରଣ ପଞ୍ଜର ତୋ ବାନା । ଦୁଃଖୀ ଲୋକଙ୍କ ବନ୍ଧୁସେହ୍ନା ।
ଅନାଦି ଜ୍ୟୋତି ନିରଞ୍ଜନ । ମୋତେ ରଖ ହେ ଭଗବାନ ।

ଏମନ୍ତେ ମନେ ବିଚାରିଲା | କ୍ଷୁଦ୍ର କଳେବର ଧରିଲା ।
ଶକଟୀରଷଣେ ଡାକିଲା | କଠାଉ ତଳରେ ଲୁଚିଲା ।
ସ୍ୱର୍ଗରେ ଦେବତା ଏ ଚାହିଁ | ଶୁନ୍ୟେ ଅଛନ୍ତି ଠୁଳ ହୋଇ ।
ରାମ ଯେ ପଳାଇଣ ଥିଲେ | ହରିଙ୍କି ଦେଖିଣ ଅଇଲେ ।
ହରିଙ୍କି ଡାକୁଛନ୍ତି ରାମ | ଉଠ ହୋ ଶ୍ରୀପୁରୁଷୋତ୍ତମ ॥
ଉଠ ବୋଲିଣ ନ ଉଠିଲେ | ହରିଙ୍କି ତୋଳିଣ ଧଇଲେ ।
ହରିର ଦେହେ ପ୍ରାଣ ନାହିଁ | କାନ୍ଦନ୍ତି ରେବତୀର ସାଇଁ ।
ଉଚାଟ କଲୁ ଗୋପୀନାଥ | ତୁ ଭାଇ ପ୍ରାଣର ସଙ୍ଗାତ ॥
ଅହା ମୋ ଭାଇ ବନମାଳୀ | ତୋତେ ଦଂଶିଲା ସର୍ପକାଳୀ ।
କାହାର ବୋଲ ତୁ ନ କଲୁ | କାଳନ୍ଦୀ ଜଳକୁ ଅଇଲୁ ।
କୋଳରେ ଘେନି ନରୋତ୍ତମ | କାନ୍ଦନ୍ତି ଭାଇ ବଳରାମ ।
ଏକା ରେ କରିଗଲୁ ଭାଇ | ମୋତେତ ସଖା କେହି ନାହିଁ
ଏକା ମୁଁ ଗୋପକୁ ଯେ ଯିବି | ଗୋପରେ କି ବୋଲି କହିବି ।
ଯଶୋଦା ଦେଖିଣ କାନ୍ଦିବେ | ଗୋପାଳେ ଗୋପେ ନ ରହିବେ
ଶୁଣିବେ ଗୋପର ସୁନ୍ଦରୀ | ଜୀବନ ନ ପାରିବେ ଧରି ।
ନନ୍ଦ ଯେ ହୋଇବ ବିକଳ | ଛାଡ଼ିଣ ଗଲୁ ଅଦମୂଳ ।
କଂସ ତା ବାରତା ପାଇବ | ଶୁଣିଣ ହରଷ ହୋଇବ ।
ଗୋପପୁରକୁ ଧାଡ଼ି ଦେବ | ପାଇଲେ ଆମ୍ଭଙ୍କୁ ମାରିବ ।
ମୁଁ ତାକୁ ମାରି ନ ପାରଇ | ମୋତେ ମାଇଲୁ ଭବଗ୍ରାହୀ ।
କଂସକୁ ମୋର ବଡ଼ ଡର | ତା ପାଦେ କୋଟି ନମସ୍କାର ।
ତୁ ମୋତେ ଗଲୁ ଛାଡ଼ିକରି | କିସ କରିବି ଦେହ ଧରି ॥
ତୋତେ ଦେଖିଣ ମୋର ବଳ | ମୋତେ ଛାଡ଼ିଲୁ ଅଦମୂଳ ।
ଏବେ ମୁଁ କି ବୁଦ୍ଧି କରିବି | କାଳନ୍ଦୀ ଜଳକୁ ଡେଇଁବି ।
ବାହୁନି କାନ୍ଦୁଛନ୍ତି ରାମ | ଛାଡ଼ିଣ ଗଲୁ ନରୋତ୍ତମ ।
କୋଳରେ ରାମ ଧରିଛନ୍ତି | ଢଳିଣ ଅଛନ୍ତି ଶ୍ରୀପତି ।

ଅକାଶେ ଦେବ ଛନ୍ତି ରହି । ସେଠାରେ କେହି ସଖା ନାହିଁ
ଏକା ଅଛନ୍ତି ବନଗ୍ରାମ । କୋଳେ ଘେନିଣ ନରୋତ୍ତମ ॥
ଶୁନ୍ୟ ଶୁଭିଲା ଦେବବାଣୀ । କାହିଁକି କାନ୍ଦ ହଳପାଣି ।
କୋଳରେ ଧରି ଅଛୁ ତୁହି । ଜଳି ପଡ଼ୁଛୁ ଭାବଗ୍ରାହୀ ।
ଛାଡ଼ ତୁ ମନୁ ଶୋକ ଡର । ଚଲୁଛେ ମାନସେ ସୁମର ।
ଆକାଶୁ ଶବଦ ଶୁଣିଣ । ଶ୍ରୀରାମ ଛାଡ଼ିଲେ ରୋଦନ ॥
ସ୍ତୁତି କରନ୍ତି ଘନ ଘନ । ରକ୍ଷ ହେ ବଜନଢା ନନ୍ଦନ ।
ଷାଠିଏ ହସ୍ତ ବରଷ । ଥିଲା ସେ ଡମ୍ବ ମଧ୍ୟେ ବାସ ।
ସ୍ୱେଚ୍ଛାରେ ଡମ୍ବ ଫୁଟାଇଲା । ଗଗନ ମାର୍ଗକୁ ଉଠିଲା ।
ଦେଖିଲା ଗଗନରେ ଥାଇ । ହରିଣୀ ବନେ ଚରୁଛନ୍ତି ।
ତାହାଙ୍କୁ ଦେଖିଣ ପଡ଼ିଲା । ନାଉଡ଼ ତାଙ୍କୁ ଘେନିଗଲା ।
ପର୍ବତ ଭାର ନ ସହିଲ । ବସିବା ଠାବ ନ ଦିଶଇ ।
ସମୁଦ୍ର ମଧ୍ୟରେ ତୁ ଯାଇ । ବୃକ୍ଷ ଗୋଟିକୁ ଚାହିଁ ଥୋଇ ।
ଯେ ଜଳେ ଅଛି ବୃକ୍ଷ ମୂଳ । ଚାରି ଦିଗକୁ ଚାରି ଡାଳ ।
ଦକ୍ଷିଣେ ଯେଉଁ ଡାଳ ଅଛି । ତିରିଶ ଯୋଜନ ବଢ଼ିଛି ।
ପୂର୍ବ ଦିଗରେ ଯେଉଁ ଡାଳ । ସତୁରି ଯୋଜନ ବିସ୍ତାର ।
ପଶ୍ଚିମେ ଯେଉଁ ଡାଳ ଥାଇ । ପଚାଶ ଯୋଜନ ଅଟଇ ।
ଯେ ଡାଳ ଲମ୍ବିଛି ଉତ୍ତର । ଷାଠିଏ ଯୋଜନ ବିସ୍ତାର ।
ଚୁଡ଼ ଯେ ବସନ୍ତେ ଭାଙ୍ଗିଲା । ସେ ଡାଳ ତଳରେ ପଡ଼ିଲା ।
ବଂଶମତୀ ଯେ ସ୍ତୁତି କଲା । ତା ଭାର ସହି ନ ପାରିଲା ।
ତାହାର କହେଲେ ବୋଲକଲା । ଡାଳକୁ ଅଣ୍ଟରେ ଧରିଲା ।
ନାଉଡ଼େ ମୃଗ ଯୋଡ଼ି ହେଲେ । ଉଡ଼ିଲା ଗଗନ ମଣ୍ଡଳେ ।
ବସିବା ଠାବ ନ ମିଳଇ । ତୋମନ ଜାଣିଲେ କହ୍ନାଇ ।
ତୋତେ ଡାକିଲେ ଚକ୍ରଧର । ବସ ତୁ ଡାହାଣି ଭୁଜର ।
ହସ୍ତ ବଢ଼ାଇ ହରି ଦେଲେ । ଲକ୍ଷେ ଯୋଜନ ବଢ଼ିଗଲେ ॥

| | |
|---|---|
| ତାହା ଯେ ଦେଖି ପକ୍ଷୀବର । | ବସିଲା ଡାହାଣ ଭୁଜର । |
| ଗୋବିନ୍ଦ ବୋଇଲେ ଏ ବୀର । | ଡାଳ ତୁ ପକାଅ ତଳର ॥ |
| କୃଷ୍ଣଙ୍କ ବୋଲ ତୁହି କଲୁ । | ଡାଳ ତୁ ତଳେ ପକାଇଲୁ । |
| ସେ ଡାଳ ଶ୍ରୀହରି ଧରିଲେ । | ବହୁଦୂରକୁ ଫିଙ୍ଗିଦେଲେ । |
| ପଡ଼ିଲା ସମୁଦ୍ରର କୂଳେ । | ଚନ୍ଦ୍ରଭାଗାର ତୀର୍ଥସ୍ଥଳେ ॥ |
| ସେ ଡାଳ ପାତାଳକୁ ଗଲା । | ଶ୍ରୀ ପୁରୁଷୋତ୍ତମେ ରହିଲା । |
| ସୁଜନେ ଶୁଣ ଲଭ ସୁଖ । | ସେ ଡାଳ କଳ୍ପବଟ ବୃକ୍ଷ । |
| ତହୁଁ ଯେ ଡାଳ ବଢ଼ିଗଲା । | ଗରୁଡ଼ କଣ୍ଠାଟେ ହୋଇଲା । |
| ଗରୁଡ଼ ଭୋଜନେ ବସିଲେ । | ଭୁଞ୍ଜିଣ ସନ୍ତୋଷ ହୋଇଲେ । |
| ବୋଇଲା ଧନ୍ୟ ଧନ୍ୟ ହରି । | ମୋତେ ଲେଉଟିଲା ଦଇତ୍ୟାଗ୍ନି |
| ବୋଲନ୍ତି ପ୍ରଭୁ ଚକ୍ରପାଣି । | ଶୁଣ ଗରୁଡ଼ ମୋର ବାଣୀ । |
| ପିଠିରେ ବସିବି ତୋହର । | ସତ୍ୟ ତୁ କର ପକ୍ଷୀବର । |
| ସନ୍ତୋଷେ କହିଲେ ଯେ ତୁହି । | ତୁମ୍ଭେ ମୋ ଦେବ ଭାବଗ୍ରାହୀ । |
| ଜାଣିଲେ ଦେବ ଚକ୍ରଧର । | ପଡ଼ିଲା ଶ୍ରୀପାଦପଦ୍ମର । |
| ଶ୍ରୀହରି ଆଜ୍ଞା ଦେଲେ ଯାଅ । | ରମ୍ୟକ ଦ୍ୱୀପେ ତୁହି ଥାଅ । |
| ଶ୍ରୀହରି ଆଜ୍ଞାରେ ତୁ ଗଲୁ । | ରମ୍ୟକ ଦ୍ୱୀପରେ ରହିଲୁ । |
| ଏବେ ଯେ ଗୋବିନ୍ଦଙ୍କୁ ତୋର । | ସଂକଟ ପଡ଼ିଲା ଏଠାର । |
| ହରିଙ୍କି ରଖ ପକ୍ଷୀବର । | ହେ ବୀର ବିନତା କୁମର । |
| ଯହୁଁ ଶ୍ରୀରାମ ସ୍ତୁତି କଲେ । | ରମ୍ୟକେ ଗରୁଡ଼ ଯେ ଥିଲେ । |
| ଭାରିଯା ଯେ ମଞ୍ଜନାବତୀ । | ଗରୁଡ଼ ଦେଖି ବସିଛନ୍ତି । |
| ଭାରିଯା ବୋଲଇ ଏ ଗିର । | କ୍ଷମା କର୍ମିଲ ଅମ୍ଭ ପୁର । |
| ଗରୁଡ଼ ବୋଲେ ତାହା ଶୁଣି । | ଅମ୍ଭଙ୍କୁ ଲୋଡ଼େ ଚକ୍ରପାଣି । |
| ଶୁଣ ଗୋ ପରାଣ ସଜନୀ । | ରାମ ଯେ ସ୍ତୁତି କଲେ ପୁଣି । |
| ମୋ କୋଳୁ ଓହ୍ଲାଅ ଏକ୍ଷଣି । | ମୋତେ ଲୋଡ଼ିଲେ ଚକ୍ରପାଣି । |
| ମଞ୍ଜନାବତୀଙ୍କୁ ଛାଡ଼ିଣି । | ଗରୁଡ଼ ଅସ୍ଥିର ଉଡ଼ିଣ । |

ସପତ ବ୍ରହ୍ମାଣ୍ଡ ଭର୍ମିଲା । ଅକାଶେ ମେଘ ଗର୍ଜିଲା ।
ବଜନ୍ତି ଅମ୍ବୁଟ୍ଟ ଗଗନେ ! ଗରୁଡ଼ ବନତା ନନ୍ଦନ ।
ପକ୍ଷୀର ଡେଣ ଯହିଁ ବାଜ । ମେରୁ ପର୍ବତ ଯାଏ ଭାଜ ।
କାଳନ୍ଦୀ ନିକଟେ ମିଳିଲା । ଶ୍ରୀ ପାଦପଦ୍ମରେ ପଡ଼ିଲା ।
ଦେଖି ବୋଲନ୍ତି ହଳଧର । ଉଠ ଉଠ ହେ ପକ୍ଷୀବର ।
କାଳୀ ଦଂଶିଲା ଚକ୍ରଧର । ଏଥୁ ଉଦ୍ଧର ପକ୍ଷୀବର ।
ଏବେହେଁ ରଖ ଚକ୍ରଧର । ପ୍ରାଣେ ରଖ ତୁ ମୋହର ।
କଂସର କଲା ମନ୍ଦପଣେ । ମାରିବ ବୋଲି ଗୋପଜନ ।
ଅଣିଲା ପଦ୍ମପୁଷ୍ପ ତୋଳ । କୋପେ ଦଂଶିଲା ସର୍ପକାଳୀ ।
ଗରୁଡ଼ ଏମନ୍ତ ଶୁଣିଲା । କାଳୀକି ଦେଖାଅ ବୋଇଲା ।
ପ୍ରାଣେ ମାରିବ ଏହିକ୍ଷଣେ । ସହିତେ ପୁତ୍ର ନାଗଗଣେ ।
କାଳୀ ଶୁରକୁ ନାହିଁ ଡର । ଦଂଶିଲା ଅସି ଚକ୍ରଧର ।
ଏମନ୍ତ କାଳେ ଶୁନ୍ୟ ଚିର । ଅମୃତ ଅଣ ପକ୍ଷୀବର ।
ଗରୁଡ଼ ଅମୃତ ଅଣିଲେ । ଗୋବିନ୍ଦ ବଞ୍ଚିବଟି ଭଲେ ।
ଏମନ୍ତ ଜାଣି ପକ୍ଷୀବର । ଉଡ଼ିଲା ଗଗନ ମାର୍ଗର ।
ଅମୃତ ସଞ୍ଜୀବନୀ ପୁର । ଗମିଲା ଖରେ ଖଗେଶ୍ୱର ।
ଦେଖିଣ ଗନ୍ଧର୍ବ ଧାଇଁଲେ । ଗରୁଡ଼ ପିଠିରେ ମାଇଲେ ।
ପିଟନ୍ତି ଗଦା ମୁଦଗର । ମାରନ୍ତି ଶିଳା ଯେ ପଥର ।।
ମାରନ୍ତି ଛେଲ ଚକ୍ରଘାତ । ଗରୁଡ଼ ଅଟ୍ଟୁ ପିଠି ପାତ ।
ତହୁଁ ଯେ ବିନତାର ବଳା । ଝାପେ ଯେ ଡେଣା ବିଞ୍ଚିଦେଲା
ଗନ୍ଧର୍ବମାନେ ଉଡ଼ିଗଲେ । ବେ ଲକ୍ଷ ଯୋଜନେ ପଡ଼ିଲେ ।
ଗରୁଡ଼ ଅମୃତ କୁଣ୍ଡରେ । ବସିଲା ଯାଇ ଧାତକରେ ।
ଅମୃତ ଅଣିବ ଲୋଡ଼ାଇ । କାହିଁରେ ନେବ ସେ ପାଞ୍ଚଇ ।
ନାଗଡ଼େ ଯେବେ ଏହା ନେବ । ଶ୍ରୀମୁଖେ କେମନ୍ତେ ମୁଁ ଦେବ ।
କାଞ୍ଚୁଟେ ଉଚ୍ଛିଷ୍ଟ ହେବ । ଶ୍ରୀହରି କେମନ୍ତ ଖାଇବ ।

ନିଯୁନେ ପୁରିଲ ଅମୃତ । ଉଠିଲା ବିନତାର ସୁତ ।
କାଳନ୍ଦୀ କୂଳରେ ହୋଇଲା । ଅମୃତ ଦେଇଣ ଭେଟିଲା ॥
ଅମୃତ କୃଷ୍ଣ ମୁଖେ ଦେଇ । ପଛକୁ ଅପସରି ରହି ।
ଶ୍ରୀକୃଷ୍ଣ ଖାଇଣ ଅମୃତ । ଉଠି ବସିଲେ ଗୋପୀନାଥ ॥
ଉଠିଣ ବସିଲେ ମୁରାରି । ଶ୍ରୀକରେ ଶଙ୍ଖ ଚକ୍ର ଧରି ।
ଅନାଇ ଦେଲେ ନରୋତ୍ତମ । ଏକା ଅଛନ୍ତି ବଳରାମ ।
ଖଣ୍ଡେ ଦୂରରେ ପକ୍ଷୀବର । ଉଭା ହୋଇଛି ଯୋଡ଼ିକର ॥
ବୋଲନ୍ତି ପ୍ରଭୁ ଭଗବାନ । ଅନାଦି ନାଥ ନିରଞ୍ଜନ ॥
ଶରଣୀ ରଖ ଚକ୍ରପାଣି । ଗରୁଡ଼ ଯେତେହେ ସ୍ତୁତି ଭଣି ।
ସ୍ୱର୍ଗେ ଦେବତା ଦେଖୁଥିଲେ । ଜୟ ଶବଦେ ସ୍ତୁତି କଲେ ।
ଅମୃତ ଖାଇ ଦେବରାୟ । ଉଠିଲେ ଗଲା ଅମ୍ଭ ଭୟ ।
ଶୁଣ ସୁଜନେ ଦେଇ ମନ । ଶ୍ରୀକୃଷ୍ଣ ଚରିତ ବିଧାନ ।
କେ କରିପାରେ କୃଷ୍ଣ ଭାବ । କହିବା ସମର୍ଥ ନୋହିବ ।
ଶ୍ରୀକୃଷ୍ଣ ଯେତେ ଲୀଳାରଙ୍ଗ । ଯେସନେ ସମୁଦ୍ର ତରଙ୍ଗ ॥
କୃଷ୍ଣ ଭଜନ ବହୁଦୂର । ପାଇ ନାହାନ୍ତି ତପୀବର ।
କୃଷ୍ଣଙ୍କୁ ଭଜ ଅନୁକ୍ଷଣ । ଲଭିବ ବଇକୁଣ୍ଠ ସ୍ଥାନ ।
ଏ ଅଟେ ଅନିତ୍ୟ ସଂସାର । ଶ୍ରୀକୃଷ୍ଣ ବିନା ନାହିଁ ପାର ।
ହରିଙ୍କି କରେ ଯେହୁ ଲୟ । ଅପୁବୀ ଲଭିବ ତନୟ ॥
ଥିବ ଉଦାର ଚିତ୍ତେ ନିତ୍ୟେ । କୃଷ୍ଣ ମହିମା ଏ ଜଗତେ ।
କେବଳ ଅଟେ ଚକ୍ରପାଣି । ଶରଣ ଜ୍ୟୋତିଙ୍କ ମାଗୁଣି ।
ଏ ପଦ୍ମତୋଳାର ପୁରାଣ । ଶୁଣନ୍ତେ କଳୁଷ ନାଶନ ।
ସୁଜନେ ନ ଧରିବ ଦୋଷ । ମୁଁ ଅଟଇ ଶ୍ରୀକୃଷ୍ଣର ଦାସ ।
ମୂଳଟି ଅଟଇ ବିଶ୍ୱାସ । ଭଣଇ ନୀଳାମ୍ବର ଦାସ ।

ଇତି ଶ୍ରୀ ପଦ୍ମତୋଳାପୁରାଣେ ଶ୍ରୀକୃଷ୍ଣଚରଣେ କାଳୀୟଦଂଶନେ ଗରୁଡ଼ ଅମୃତ ଆନୟନେ ଶ୍ରୀକୃଷ୍ଣସଚେତନେ ନାମତୃତୀୟୋଽଧ୍ୟାୟଃ

# ଚତୁର୍ଥ ଅଧ୍ୟାୟ

ଶୁଣ ହେ ରାଜା ପରୀକ୍ଷିତ । କୃଷ୍ଣ ଚରିତ ଭାଗବତ ।
କୃଷ୍ଣ ଯେ ମୃତ୍ୟୁ ଲଭିଥିଲେ । ଅମୃତ ଖାଇଣ ବଞ୍ଚିଲେ ।
ଶ୍ରୀମୁଖେ ବୋଲନ୍ତି ବଚନ । ଶୁଣ ହେ ଭାଇ ସଙ୍କର୍ଷଣ ।
ଗୋପାଳପୁଏ କେଣେ ଗଲେ । ମୋତେ ତ ଛାଡ଼ି ପଳାଇଲେ ।
ରୋଦନ କର ହଳଧର । କଥାଏ ଶୁଣ ହେ ମୋହର ।
ତୁମ୍ଭେ ଯେ ହେଉଛ ବ୍ୟାକୁଳ । ନୟନୁ ବହେ ଅଶ୍ରୁଜଳ ।
ଗରୁଡ଼ ଯୋଡ଼ିଅଛୁ କର । କହ ହେ କେବଣ ପ୍ରକାର ।
କୋହେ ବୋଲନ୍ତି ବଳରାମ । ଶୁଣ ହେ ଶ୍ରୀ ପୁରୁଷୋତ୍ତମ ।
କାହାର ବୋଲ ତୁ ନ କଲୁ । କାଳିନ୍ଦୀ ଜଳକୁ ଅଇଲୁ ।
ମାତା ଧରିଲେ ତୋ'ର ହସ୍ତ । ବୋଲ ନ କଲୁ ଗୋପୀନାଥ ।
ପାଦେ ପଡ଼ିଲେ ସର୍ବବାଳୀ । ନ ଯାଅ ପଦ୍ମଫୁଲ ତୋଳି ।
ତାହାଙ୍କ ବୋଲ ନ ମାନିଲୁ । ଶେଷରେ ହଠହଣ୍ଡା ହେଲୁ ।
ଗୋପାଳ ପୁଅ ସର୍ବ କାଳି । ଗିଳିଣ ତୋହ ପାଶେ ମିଳି ।
ଶୋଇଣ ଥିଲୁ ପଦ୍ମଫୁଲେ । ଦଂଶିଲା ବାମପାଦ ତଳେ ।
ରୋଦନ କଲି ମୁହିଁ ବହୁ । ଭାଇରେ ସାହା କେହି ନାହିଁ ।
କଂସର ଛଳେ ତୁ ଅଇଲୁ । କାଳିନ୍ଦୀ ଜଳେ ପ୍ରାଣ ଦେଲୁ ।
କି ବୁଦ୍ଧି କରିବଇଁ ମୁହିଁ । କେଉଁ ରାଜ୍ୟକୁ ଗମିବଇଁ ।
ମାତାଏ ଛାଡ଼ିବେ ଜୀବନ । ଗୋପ ତେଜିବେ ସର୍ବଜନ ।
କାଳୀ ଯେ ଜ୍ୱପ୍ରଧ ନ କଲା । ପ୍ରଚଣ୍ଡ ହୋଇଣ ଦଂଶିଲା ।
ସ୍ୱର୍ଗେ ଦେବତା ଦେଖୁଥିଲେ । କାହିଁକି କାନ୍ଦ ହୋ ବୋଇଲେ ।
କାରେ ଅମୃତ ବୋଲ କର । ମାନସେ ଗରୁଡ଼ ସୁମର ।
ଶୁଣିଲେ ଯହୁଁ ଦେବବାଣୀ । ସ୍ମରିଲେ ଗରୁଡ଼ ସେକ୍ଷଣି ।
ଗରୁଡ଼ ତକ୍ଷଣେ ଅସିଲେ । ପ୍ରଭୁଙ୍କୁ ଦେଖାଅ ବୋଇଲେ ।
ତୁମ୍ଭ ନିକଟେ ପକ୍ଷୀବର । ଉଡ଼ିଲା ଗଗନ ମାର୍ଗର ।

ଅମୃତ ଆଣି ମୁଖେ ଦେଇ । ଉଠି ବସିଲ ସବଗ୍ରାହୀ ।
ଯୋଗରେ ଗରୁଡ଼ ଅଇଲ । ସେ ଆସି ତୋତେ ଜୀଆଁଇଲ ।
ଏତେକ ରାମଠାରୁ ଶୁଣିଲେ । ପକ୍ଷୀବରକୁ ଆଜ୍ଞା ଦେଲେ ।
ସ୍ୱର୍ଗ ମର୍ତ୍ତ୍ୟ ଯେ ପାତାଳରେ । ଖୋଜ ହେ ଯାଇ ତିନିପୁରେ ।
ଯହିଁ ସେ କାଳୀକୁ ଦେଖିବ । ଝିଙ୍କିଣ ସଙ୍ଗତେ ଆଣିବ ।
ଆଜ୍ଞା ପ୍ରମାଣେ ପକ୍ଷୀବର । ଉଡ଼ିଲା ଗଗନ ମାର୍ଗର ।
ଖୋଜଇ ପର୍ବତ ମାଳର । ସାଗର ଲତା ବନ ଘୋର ।
ନଦୀ ପୋଖରୀ ବାପି କୂଅ । ଖୋଜଇ ବିନତାର ପୁଅ ।
ଖୋଜିଣ ନ ପାଇଲା ଯହୁଁ । ବିବରେ ପଶିଲାକ ତହୁଁ ।
ଧବ ଗିଳିଲା କାଳୀ ବଳ । ଭାଙ୍ଗିଲା କାଳୀର ଯେ ଶାଳ ।
ଉମ୍ବ ବାନ କେ ଖାଇଗଲା । ସ୍ୱର୍ଗରେ ପ୍ରବେଶ ହୋଇଲା ।
ଉଠିଣ ଗଲା ସ୍ୱର୍ଗପୁର । ବସିଲା ଦେବଙ୍କ ସଭାର ।
ଇନ୍ଦ୍ର ଯେ ସ୍ୱର୍ଗେ ବସିଛନ୍ତି । ଗରୁଡ଼ ବଚନ ବୋଲନ୍ତି ।
ମୋତେ ପେଷିଲେ ବନମାଳୀ । ତୋ ପୁରେ ଲୁଚିଛନ୍ତି କି କାଳି ।
ଇନ୍ଦ୍ର ବୋଲନ୍ତି ସ୍ୱର୍ଗେ ନାହିଁ । ପାତାଳପୁରେ ଖୋଜ ଯାଇ ।
ସେଠାରୁ ପକ୍ଷୀବର ଗଲା । ପାତାଳପୁରେ ପ୍ରବେଶିଲା ।
ବୋଲନ୍ତି ଗରୁଡ଼ ଅହିଙ୍କି । ତୋ ପୁରେ କାଳୀ ଲୁଚିଛନ୍ତି କି ।
ଅରେ ବାସୁକି ଯୋ ଘଣର । ପେଷିଅଛନ୍ତି ଚକ୍ରଧର ।
ବାସୁକି ଦଏ ତା ଉତ୍ତର । ସେ ପ୍ରଭୁ ଜଗତ ଈଶ୍ୱର ।
ମୋତେ ଯେ ଶାଢ଼ୀଦେଲେ ହର । ପାତାଳପୁରେ ଅଧିକାରୀ ।
ମୋ ପୁରେ କାଳୀ ଲୁଚିନାହିଁ । କାଳୀ ମୋ ଭଗାସି ଅଟଇ ॥
ବାସୁକୀ ରାଜା ନାସ୍ତି କଲା । ଗରୁଡ଼ ତହୁଁ ବାହୁଡ଼ିଲା ।
ଚଉଦ ବ୍ରହ୍ମାଣ୍ଡ ଖୋଜିଲା । କାଳୀର ଭେଟ ନ ପାଇଲା ।
ପ୍ରଭୁଙ୍କ ପାଶେ ଖବର ଯାଇଁ । କରପତ୍ର ଯୋଡ଼ି କହଇ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ଗଲି । ତିନିଭୁବନେ ନ ପାଇଲି ।

ବୋଲନ୍ତି ନୈବେଦ୍ୟଗୋସାଇଁ । କାଳୀ ରହିଲା ଅଛି କାହିଁ ।
ହରି ବୋଲନ୍ତି ପକ୍ଷୀବର । ମୋତେ ଲଗିଲା ଚମତ୍କାର ।
ବଳରାମ ମୁଖଁକୁ ଚାହିଁ । ବୋଲନ୍ତି କାଳୀ ଗଲା କାହିଁ ।
ରାମ ଯେ କହୁଛନ୍ତି ମୁହିଁ । କାଳୀକୁ ନେବେ ଦେଖିନାହିଁ
କେଉଁ ଦାଗରେ ସେ ରହିଲା । ମୋ ମନେ ବିସ୍ମୟ ଲଗିଲା ।
ବୋଲନ୍ତି ପ୍ରଭୁ ଚକ୍ରପାଣି । ଅଇଲେ ମାରିବ ଏଷଣି ।
ପ୍ରଭୁ ଗରୁଡ଼ର ବଚନେ । ସ୍ୱର୍ଗେ ଶୁଣନ୍ତି ଦେବଗଣେ ।
ବୋଲନ୍ତି ଶୁଣ ବନମାଳୀ । କଦମ୍ବ ତଳେ ଅଛି କାଳୀ ।
ଶୂନ୍ୟରୁ ଶବଦ ଶୁଣିଲେ । କଦମ୍ବ ତୋଳଣି ଠଇଲେ ।
କାଳୀ ଯେ କଦମ୍ବ ତଳେଣ । ଧରିଛି ଦନ୍ତରେ ଚରଣ ।

## କାଳୀଦଳନ

ଦେଖିଣ କୋପମାନ ହେଲେ । କାଳୀଫଣାରେ ଉଭା ହେଲେ ।
ତାଣ୍ଡବ କଲେ ତା ଉପର । ଦିଶନ୍ତି ଯଥା ନଟବର ।
ସାତ ପର୍ବତ ଯେଉଁ ଗୁରୁ । ଶ୍ରୀଜଗନ୍ନାଥ ମହାମେରୁ ।
କାଳୀ ଶିରରେ ଉଭା ହୋଇ । ବୋଲନ୍ତି ନୈବେଦ୍ୟ ଗୋସାଇଁ
ଟେକ ଅସି ରଖୁ ତୋର ଶିର । ଚଉଦ ବ୍ରହ୍ମାଣ୍ଡ ଭିତର ।
ଏତେ କେ ରେ ଭରସା ତୋହର । ଶ୍ରୀଅଙ୍ଗ ଛୁଇଁଲୁ ମୋହର ।
ମାରି ପେଲିବି ତୋର ପ୍ରାଣ । ପୃଥ୍ୱୀରେ ନ ଥୋଇବି ଜାଣ ।
ତୋ'ତେ କ ଅଜ ଜୀଅଁଇବ । ଗରୁଡ଼ ମୁଖେ ଦିଅଇବ ।
କଷ୍ଟସ୍ତୁ ପୂରିଲା ତୋ କାଳ । ଗିଳିଲୁ ସମସ୍ତ ଗୋପାଳ ।
ଶ୍ରୀପଦ୍ମପାଦେ ଥାଇ କାଳ । ବୋଲଇ ରଖ ବନମାଳୀ ।
ଭୟରେ ଥରହର କରୁ । ମୋତେ ତ ନାହିଁ ଯେ ନିସ୍ତାର
ଭୃତ୍ୟେ ହୋଇଲେ ଦୋଷକାରୀ । କ୍ଷମାସାଗର ଦଇତାରି ।
ନାତେ ଯେ ମାଇଲା ବ୍ରାହ୍ମଣ । ତାହା ସହିଲ ନାରାୟଣ ।
ଅଜର ପୁଅତ ମାଇଲା । ସ୍ୱମଚକ୍ଷୁ ଦାନହିଁ ପାଇଲା

ବ୍ରହ୍ମା ହରିଲ ବତ୍ସାଗଣ । ଶ୍ରୀଅଙ୍ଗୁ ଭ୍ୟାଇଲ ଆପଣ ।
ଇନ୍ଦ୍ର ବିବାଦ ତୋରେ କଲା । ସେ ପୁଣି ଶରଣ ପଶିଲା ।
ସେ ଯହୁଁ ସ୍ତୁତି କଲା ପୁଣି । ଦୟା ବହିଲ ଚକ୍ରପାଣି ॥
ଦଣ୍ଡିବା ଶକ୍ତି ଯାର ଥାଇ । ସେ ପୁଣି କ୍ଷମା ଆଚରଇ ।
କି କୃତ୍ୟ ନାଥ କରନାହୁଁ । ଭୃତ୍ୟକୁ ରଖ ମହାବାହୁ ।
ଯେତେ ମୁଁ କରିଅଛି ଦୋଷ । ଦୋଷ ନଧର ହୃଷିକେଶ ॥
ଦୋଷରେ ଗଣ୍ୟତା ନ ଯାଇ । ହସି କହନ୍ତି ଭାବଗ୍ରାହୀ ॥
ତୁ ଯେବେ ଜୀବନ ପାଇବୁ । ଗୋପାଳ ପୁଅ ଜାଁଇବୁ ।
କଠୋର ଭକ୍ତି ତୁହି ଅସ । ତୋତେ ମୁଁ ହୋଇଲି ସନ୍ତୋଷ
ଶ୍ରୀମୁଖ ଆଜ୍ଞା ଯେ ପାଇଲା । କଠୋର ଭକ୍ତି ବାହାରିଲା ।
ଶରଣ ରକ୍ଷଣ ତୋ ବାନା । ଦୁଃଖୀ ଲୋକଙ୍କ ବନ୍ଧୁସେହ୍ନା ।
ଖଟେଣ୍ଡ୍ରକ ଦୂର ଲମ୍ବ ହେଲା । ବୋଲଇ ରଖ ନନ୍ଦବଳା ॥
ବୋଲଇ ଶୁଣିମା ଗୋସାଇଁ । ପୁଅଙ୍କୁ ପାଇବଇଁ କାହିଁ ॥
ସପ୍ତ ପୁଅ ଭସ୍ମ ହେଲେ । ବିଷମ ଜ୍ୱାଳାରେ ପଡ଼ିଲେ ।
କାଳୀର ବଚନ ଶୁଣିଣ । ଦ୍ୱିଗୁଣ କୋପେ ନାରାୟଣ ॥
ଗରୁଡ଼େ ଆଜ୍ଞା ଦେଲେ ହରି । କାଳୀକି ବେଗେ ପକାମାରି ।
ଗରୁଡ଼ ଆଜ୍ଞା ଯେ ପାଇଲା । କାଳୀୟୁ କେଶକୁ ଧରିଲା ।
କାଳୀୟୁ ହୋଇ ଥରହର । ବୋଲଇ ରଖ ଚକ୍ରଧର ॥
ତୁମ୍ଭେ ଯେ ଗୋପୀଙ୍କ ଜୀବନ । ବାସୁଦେବଙ୍କର ନନ୍ଦନ ।
ରଖ ହେ ପ୍ରଭୁ ପଦ୍ମନାଭ । ରଖ ହେ କମଳା ବଲ୍ଲଭ ।
ଦେବ ମୁଁ ସମସ୍ତ ଗୋପାଳ । ଦୟା ଅଚର ଅଦମୂଳ ।
ଶରଣ ପଶିଲି ତୋ ପାଦ । ରଖ ହେ ପ୍ରଭୁ ଅଦକନ୍ଦ ।
ହସି ବୋଲନ୍ତି ନନ୍ଦବାଳ । ଦିଅ ମୋ ସମସ୍ତ ଗୋପାଳ ।
ଦେଉଛି ଗୋପାଳ କୁମର । ଦେଶକୁ ଛାଡ଼ିଦିଅ ମୋର ।
ଶ୍ରୀହରି ବୋଲନ୍ତି ଗରୁଡ଼ । କାଳୀୟୁ କେଶ ବେଗେ ଛାଡ଼ ।

ଆଜ୍ଞା ପାଇଣ ପକ୍ଷୀଈଶ । ଛାଡ଼ିଲ କାଳୀୟର ଦେଶ ।
ଦୟା ମୁଁ କଲିରେ ପାମର । ଦଅ ତୁ ଗୋପାଳ କୁମର ।
କଦମ୍ବ ଡାଳ ଭାଙ୍ଗି କର । ଉଦରେ ଭରଣ ଜଦ୍ୱାର ।
ଗୋପାଳ ପୁଏ ଯେ ବାହାର । ରୂପରେ ନାହିଁ ପଟାନ୍ତର ।
କୃଷ୍ଣଙ୍କୁ ଦେଖି ଗୋପବାଳେ । ପାଦେ ପଡ଼ିଲେ ଏକାବେଳେ
ଶସ୍ଏ ମାରି ସେ ଡ଼ଅଁନ୍ତି । ହରି ଶବଦ ରଟୁଛନ୍ତି ।
ଲକ୍ଷେ ଷାଠି ସହସ୍ର ପୁଅ । ତହଲେ ପୂର୍ଣ୍ଣ ନଭମୟ ।
ଗୋଷ୍ଠି ଗଣିତା କରି ଗଲେ । ଶ୍ରୀହରି ମୁଖକୁ ଚାହିଁଲେ ॥
ପୁଏ ଯେ ଲଉଡ଼ି ଖେଳନ୍ତି । ଲଉଡ଼ି ଘେନି ପଳାବନ୍ତି ।
ଶ୍ରୀହରି ଅନାଇ ହସିଲେ । କାଳୀୟେ ବଚନ ବୋଇଲେ
ରଖ ମୋ ଏ କାଳନ୍ଦୀ ଜଳ । ଯେତେକ ଅଛନ୍ତି ନାଗବଳ ॥
କାଳୀୟ ବୋଲଇ ଏ ଗୀର । କାହୁଁ ପାଇବ ଚକ୍ରଧର ॥
କାଳୀୟ ବୋଲଇ ଗୋସାଇଁ । ନାଗବଳ ପାଇବ କାହିଁ ॥
ତୁମ୍ଭର ହସ୍ତେ ଥୋଇବେ ମଲେ । ଥୋକାଏ ଗରୁଡ଼ ଭକ୍ଷିଲେ ॥
ଗରୁଡ଼ ବୋଲଇ ତୁ ହୀନ । ତୁମ୍ଭ ତୋ ଚର୍ବେ ମା'ଗୁ ଦାନ
ହସି ବୋଲନ୍ତି ବନମାଳୀ । ଦୟା ମୁଁ କଲି ତୋତେ କାଳି
ଶୁଣରେ ସର୍ପ ମୋର ଗୀର । ସର୍ପେ ଜାଅନ୍ତୁ ତୋର ପୁର ॥
ଗୋବିନ୍ଦ ପ୍ରସନ୍ନ ହୋଇଲେ । କାଳୀୟଶିରେ ପାଦ ଦେଲେ ॥
କଠାଉ ଚିହ୍ନ ଥାଉ ରହି । ଚିହ୍ନିଲେ ନ ମାରିବେ କେହି
ଯେ ତୋତେ ଚିହ୍ନିଲେ ମାରିବ । ସେ ଅମ୍ଭ ଦ୍ରୋହୀଯେ ହୋଇବ
କହନ୍ତୁ ଲକ୍ଷ୍ମୀ ତା ଛାଡ଼ିବ । ଯାହା କହିଲୁ ସତ ଭାବ ॥
ପ୍ରସନ୍ନ ହେଲେ ନାରାୟଣ । ଗରୁଡ଼େ ବୋଲନ୍ତି ବଚନ ॥
କାଳୀର ଯେତେ ନାଗବଳ । ମରଣ ଅଛନ୍ତି ସକଳ ॥
କାଳନ୍ଦୀରେ ଅମୃତ ଦେଇ । ନାଗୁଣୀବଳେ ଦେବୁ ଜୀୟାଇଁ
କୃଷ୍ଣଙ୍କ ଆଜ୍ଞା ସେ ପାଇଲା । ଅମୃତ ଆଣିବାକୁ ଗଲା ॥

ଅମୃତ ଅଣି ପକ୍ଷୀବର । ସମ୍ଭାଳ କାଳନ୍ଦୀ ଭିତର ॥
ଯେତେକ ସର୍ପ ମରିଥିଲେ । ଅମୃତ ଖାଇଣ ବଞ୍ଚିଲେ ॥
କାଳୀୟେ ବୋଲନ୍ତି ଶ୍ରୀହରି । ଭକତ ହୋଇଲୁ ଅମ୍ଭରି ॥
କାଳିୟ ସନ୍ତୋଷ ହୋଇଲା । ପାଦରେ ଶିର ଲଗାଇଲା ॥
କହନ୍ତି ପ୍ରଭୁ ନନ୍ଦବାଳ । ଶୁଣରେ ତୁମ୍ଭେ ନାଗକୁଳ ॥
ଶତଭାର ଏ ପୁଷ୍ପ ନେବ । କଂସରାଜାକୁ ସମର୍ପିବ ॥
ସେ ମୋର ସହୋଦର ମାମୁଁ । ମାମୁଙ୍କୁ ହୋଇବଟି ଘ୍ରମୁ ॥
ମଥୁରା କଟକେ ପଶିବ । ରାଜାଙ୍କୁ ଦର୍ଶନ କରିବ ॥
ଶ୍ରୀମୁଖେ ଅଜ୍ଞାଦେଲେ ହରି । ଯାଅରେ ସର୍ବେ ପୁଷ୍ପଧରି ॥
ଫୁଲ ଘେନିଣ ଚଳିଯିବ । କାହାକୁ କିଛି ନ କହିବ ॥
ଯାଅ ବେଗେ ସର୍ପେ ନିକର । ଅମ୍ଭେ ଚଳିବୁ ଗୋପପୁର ॥
ଅଜ୍ଞା ପାଇଣ ସର୍ପେ ଗଲେ । କାଳନ୍ଦୀ ହ୍ରଦରେ ପଶିଲେ ॥
ଫୁଲ ଯେ ଘେନିଣ ଫଣାରେ । ଘେନି ଚଳିଲେ ନାଗ ଖରେ ।
ପଦ୍ମ ଯେ ଅଛି ଶତଭାର । ଚଳିଲେ ମଥୁରା ନଗର ॥
ସର୍ପଙ୍କୁ ଦେଖୁଛନ୍ତି ରହି । ହରଷ ହେଲେ ଭାବଗ୍ରାହୀ ॥
କାଳୀୟୁ ଦେଖି ବନମାଳୀ । ଶ୍ରୀହସ୍ତେ ଶାଢ଼ୀ ଦେଲେ ତୋଳି
ଗରୁଡ଼ ମୁଖକୁ ଅନାଇଁ । ବୋଲନ୍ତି ତ୍ରୈଲୋକ୍ୟଗୋସାଇଁ
ଗରୁଡ଼ ଶିରେ ଦେଲେ ଶାଢ଼ୀ । ଯାଅ ତୁ ପକ୍ଷୀ ବେଗେଉଡ଼ି ॥
ରମ୍ୟକ ଦ୍ୱୀପେ ରହିଥାଅ । ତା ଶୁଣି ବିନତାର ପୁଅ ॥
ଶ୍ରୀମୁଖେ ଅଜ୍ଞା ଯେ ପାଇଲା । ହରଷେ ରମ୍ୟକକୁ ଗଲା ॥
କାଳୀକୁ କହନ୍ତି ଅଚ୍ୟୁତ । ଅଜ ତୁ ହୋଇଲୁ ଭକତ ।
ପ୍ରଭୁଙ୍କ ଭକ୍ତ ଯେ ଅଟଇ । ଦେଖିଲେ ନ ମାରନ୍ତି କେହି ।
ନାମ ମୋହର ଥିବ ରହି । କହନ୍ତି ବ୍ରହ୍ମାଣ୍ଡ ଗୋସାଇଁ ।
ଏବେ ତୁ ଥାଅ କାଳନ୍ଦୀର । ଫେରି ଅସିଲେ ବଳ ଚୋର
ତାଙ୍କୁ ଘେନିଣ ଅନନ୍ଦରେ । ଯିବୁ ତୁ କ୍ଷୀର ରତ୍ନାକରେ ।

ଅନନ୍ତେ ଶାଢ଼ୀ ଦେଖାଇବୁ । ସ୍ୱଚ୍ଛନ୍ଦ ମନରେ ରହିବୁ ।
ଯାଅ ଚଢ଼ି କାଳନ୍ଦୀ ଉପର । ଅମ୍ଭେ ଚଳିବୁ ଗୋପପୁର ।
ଶ୍ରୀମୁଖ ଅଙ୍କ ଯେ ପାଇଲ । ମେଲାଣି ମାଗି ଚଳିଗଲ ।
ସ୍ୱର୍ଗେ ଦେଖନ୍ତି ଦେବତାଏ । ବୋଲନ୍ତି ଚାଲ ଅମ୍ଭେ ଭୟେ ।
ସ୍ୱର୍ଗରୁ ଦେବତା ଆସିଲେ । କାଳନ୍ଦୀ କୂଳରେ ଭେଟିଲେ ।
ବ୍ରହ୍ମା ଇନ୍ଦ୍ରାଦି ଦେବଗଣ । ବୋଲନ୍ତି ପ୍ରଭୁ ନାରାୟଣ ।
ହେ କୃଷ୍ଣ ପର ଉପକାର । ମଥୁରାପୁର ନାଶକର ।
ସ୍ତୁତି କରନ୍ତି ସର୍ବେ ଗୃହିଁ । ତେତିଶକୋଟି ଦେବଥାଇଁ ।
ତୁ ନାଥ ଦେବ ସୁରଗାମ୍ଭୀ । ଦେବକଙ୍କ ପେଟେ ଜନ୍ମ ହୋଇ ।
ତୁ ନାଥ ପରମ ମଙ୍ଗଳ । ଧରଣୀ ପାଳୁ ତୁ କୁଶଳ ।
ଜ୍ୟୋତି ଅଜ୍ୟୋତି ତୁହି ହେଜ । ଜଗତେ ବୋଲାଉ ମହାବାହୁ ।
ବୋଲନ୍ତି ଦେବେ ପାଦେ ପଡ଼ି । କୃଷ୍ଣଙ୍କ ବେନିକର ଯୋଡ଼ି ।
ହେ ଦେବ ପ୍ରଭୁ ଜଗନ୍ନାଥ । କଂସକୁ କର ବେଗେ ହତ ।
ଦେବଙ୍କ ବଚନେ ଶ୍ରୀହରି । ହସି ବୋଲନ୍ତି ବଂଶୀଧାରୀ ।
କଂସକୁ କରିବୁ ବିନାଶ । କହନ୍ତି ପ୍ରଭୁ ହୃଷିକେଶ ।
ହସି କହନ୍ତି ଦେବ ତାଙ୍କୁ । ଅମ୍ଭେ ଯିବୁ ଗୋପପୁରକୁ ।
ଶ୍ରୀମୁଖଁ ଶୁଣି ସର୍ବଜନ । ଗଲେ ସେ ଯେ ଯାହା ଭୁବନ ।
ମଙ୍ଗଳ ଜୟ ଜୟ କରି । ଦେବେ ଚଳିଲେ ସ୍ୱର୍ଗପୁରୀ ।

ଶୁକ ଉବାଚ

ଶୁଣ ରାଜନ ପରୀକ୍ଷିତ । ଗୋପେ ବିଜୟ ଗୋପୀନାଥ ।
ଶ୍ରୀରାମ କୃଷ୍ଣ ବେନି ଭାଇ । ଗୋପକୁ ବିଜେ କଲେ ଯାଇ ।
ଗୋପାଳପୁଏ ସଙ୍ଗେ ମିଳି । ନାଚନ୍ତି ଦେଇ କରତାଳି ।
ଲଉଡ଼ିମାନ ସଙ୍ଗେ ଘେନି । ହରିବୋଲ ଶବଦ କଲେ ଧ୍ୱନି ॥
ଶ୍ରୀରାମ କୃଷ୍ଣ ବେନି ଭାଇ । ହସ୍ତକୁ ଧରା ଧରି ହୋଇ ।
ଅହାରେ ସହୋଦର ଭାଇ । ଶାଖା ହୋଇଲ ମୋତେ ବହି ।

ବୋଲନ୍ତି ପ୍ରଭୁ ଭବଗ୍ରାହୀ । ଗୋପପୁରକୁ ଯିବା ଭାଇ ।
ଶୁଣି ବୋଲନ୍ତି ହଳଧର । ଗୃଲ ସମସ୍ତେ ଗୋପପୁର ।
ଚଳିଲେ ସର୍ବ ଗୋପବାଳ । ଶବଦ କରନ୍ତି ଗହଳ ।
କେହୁ ଧାମନ୍ତି କେ ନାଚନ୍ତି । କେ କାହୁଁ ମାରଣ ପଳାନ୍ତି ।
ଏମନ୍ତ ଗୋପାଳ କୁମରେ । ଗୃଲନ୍ତି ନିଗମ ଅଦ୍ଧ ରେ ।
ଗୋବନ୍ଦ ସଙ୍ଗେ ଗୋଡ଼ାବନ୍ତି । କ୍ଷୁଧାରେ ଅନ୍ନ ଯେ ଭୁଞ୍ଜନ୍ତି ।
ଗୋପକୁ କାଳନ୍ଦୀ ନିକଟ । ତିରଣ ଯୋଜନର ବାଟ ।
ମିଳିଲେ ଗୋପର ନଗରୀ । ଶୁଣିଲେ ଗୋପର ସୁନ୍ଦରୀ ।
ଡାକଇ କେହୁ ଗୋପବାଳୀ । ଅସ ଗୋ ଯିବା ଚନ୍ଦ୍ରାବଳୀ ।
କାଳନ୍ଦୀ ଯାଇ ବନମାଳୀ । ଫୁଲ ତୋଳିଲେ କାଳୀ ଦଳି ।
କମଳା ବିମଳାକୁ ଗୁହିଁ । ଅସ ଗୋ ଗୋପାଙ୍ଗନା ତୁହି ।
ଗୋପରେ ଯେତେ ଗୋପବାଳୀ । ସଜାଡ଼ ଗୋ ସୁବର୍ଣ୍ଣ ଥାଳି ।
କରିବା ତାଙ୍କ ବନ୍ଦାପନା । ବର ଅଣିବା ନନ୍ଦନନ୍ଦନା ।
ଗୋପୀଏ ବୋଇଲେରେ ବାଳି । କରିବା ଏବେ ଜଳକେଳି ।
କାଳନ୍ଦୀ ଜଳକୁ ଅମୃତ । କଲେ ଯେ ଏବେ ଗୋପୀନାଥ ।
ବଂଶି ଯେ ଥିଲା ତାଙ୍କୁ କାଳୀ । ଯାହାର ନାମ ବନମାଳୀ ।
ଘଣ୍ଟା ଶକଟା ବକା ତୃଣି । ଶୋଷିଲେ ପୁତନା ପରାଣି ।
ଗୋପରେ କଲା ଯେତେ କୃତ୍ୟ । ଦେଖିଛ ତାଙ୍କର ଚରିତ ।
ଗୃଲ ଗୋ ଏବେ ଚନ୍ଦ୍ରାବଳୀ । ଘେନିଣ ସଙ୍ଗେ ଅର୍ଘ୍ୟଥାଳି ॥
ଶ୍ରୀଅଙ୍ଗେ ଜ୍ୱର ପୂରିଲେ । ତୋତେ ଯେ ସତୀ କରିଇଲେ ।
କଲ ଯେ କର ସତ୍ରଜଳା । ଜଳ ଅଣିଲୁ ଗୋ ଅବଳା ।
ତୋ ଅଙ୍ଗୁ ନଷ୍ଟ ଯେ ବାହାର । ନଷ୍ଟୁଗ୍ରୃସ ଯେ ଏ ରସର ।
ଦଶନେକ କୃଷ୍ଣ ଭୂତ ହେଲେ । ଚନ୍ଦ୍ରସେଣାକୁ ଡରାଇଲେ ।
ଭୟରେ ଚନ୍ଦ୍ରସେଣା ପଡ଼ି । ଅଣ୍ଟୁ ଗଣ୍ଠି ତା ଗଲା ଛୁଡ଼ି ।
ଦଶନେକ ହୋଇଲେ ନାରିକ । ପାର କରିଲେ ଗୋପୀଲୋକ ।

ଇନ୍ଦ୍ରର ଭାଙ୍ଗିଲେ ଗରବ । ହରିଲେ ଗୋପାଙ୍ଗନା ସର୍ବ ।
ବୃନ୍ଦାଙ୍କୁ କନ୍ଧରେ ବସାଇ । ଫିଙ୍ଗିଲେ ବାଲୁକାରେ ନେଇ ।
ଜଳରେ ଗୋପାଙ୍ଗନାଙ୍କର । ହରିଲେ ବସ୍ତ୍ର ବେଣୁଧର ।
ବଂଶୀ ହରଣକାଳେ ପୁଣି । ପଡ଼ିଲେ ରାଧିକା ଚରଣ ।
ଅମ୍ବର ନେଇ ଭଲ କଲେ । କାଦମ୍ବରୀ ପାନେ ମଜ୍ଜିଲେ ।
ମୂଷା ହୋଇଣ ଖୋଷା କାଟି । ଶର ଲବଣୀ ନେଲେ ଲୁଟି ।
ଏକ ଦିନରେ ଗୈର ହେଲେ । ଦିନେ ବ୍ୟାଘ୍ର ରୂପ ଧଇଲେ ।
ଦିନେଯେ ହୋଇଥିଲେ କୋକ । ରାଧାଙ୍କୁ କରିଥିଲେ ଟେକ ।
ଦିନେ ଯେ ହୋଇଥିଲେ ମାଳୀ । ରାଧାଙ୍କୁ ଫୁଲ ଦେଲେ କାଳୀ ।
ଯୋଗିଅ ହୋଇଣ ଚହଲାଇ । ନାଚୁ ଯେ ଥିଲେ ଥେଇ ଥେଇ ।
ତାହାଙ୍କ ଭାଇ ହଳଧର । ମାଇଲେ ତାଡ଼କା ଅସୁର ।
ପଣୀଷ ଥିଲେ ଯେ ଗୈରାଇ । ମାଡ଼ ଖାଇଲେ ଧରା ହୋଇ ।
ଦିନେ ଯେ ହେଲେ ସ୍ୱର୍ଣ୍ଣକାର । ଦିନେ ଯେ ହୋଇଲେ ଭ୍ରମର
ଏମନ୍ତେ ଯେତେ ଯେତେ କଥା । କହି ବସିଲେ ହେବ ପୋଥା ।
ତୁ କି ନ ଜାଣୁ ଚନ୍ଦ୍ରାବଳୀ । ଅସ ଗୋ ଧେନୁ ଅର୍ଘ୍ୟସ୍ଥାଳୀ ।
ଗଲେ ଯେ ସର୍ବ ଗୋପବାଳୀ । ଭେଟିଲେ ପଥେ ବନମାଳୀ ।
କୃଷ୍ଣଙ୍କୁ ଦେଖିଣ ଯୁବତୀ । କେ ମୁଖେ ଚୁମ୍ବନ ଦିଅନ୍ତି ।
କେହୁ ଦିଅନ୍ତି କରତାଳି । କେହୁ ଦିଅନ୍ତି ହୁଳହୁଳି ॥
ଗୋପୀଏ କୃଷ୍ଣଙ୍କୁ ଆଣିଲେ । ଗୋପରେ ପ୍ରବେଶ ହୋଇଲେ
ଦେଖିଣ ନନ୍ଦ ଯଶୋବନ୍ତୀ । ହରଷ ରାମ ଶିରୀପତି ॥
ଆସନ୍ତେ ଧେନୁ ଉତ୍ସର୍ଗିଲେ । ପୁତ୍ରଙ୍କ ଚରଣ ପୋଛିଲେ ॥
କୋଳେ ବସାଇ ଯଶୋବନ୍ତୀ । ଶ୍ରୀମୁଖେ ଚୁମ୍ବନ ଦିଅନ୍ତି ॥
କ୍ଷୀର ଲବଣୀ ଦୁଧ ସର । ଭୁଞ୍ଜନ୍ତି ପ୍ରଭୁ ଚକ୍ରଧର ।
ଟପାଏ ଯେ ବୋଲନ୍ତି ବଚନ । କାଳୀ ଦଳିଲେ ନାରାୟଣ ।
କଠାଉ ଲମ୍ଫ ଦେଲେ ହରି । କାଳିନ୍ଦୀ ଜଳ ପଙ୍କ କରି ।

ନାଗୁଣୀ ବଳକୁ ମାଇଲେ । ନାଗୁଣୀ ପୁଣି ଜୀଅଁଇଲେ ।
ବୋଲନ୍ତି ଯଶୋବନ୍ତୀ ଗୃହୁଁ । ତୁମ୍ଭର ପଦ୍ମଫୁଲ କାହୁଁ ॥
ହସି ବୋଲନ୍ତି ନନ୍ଦବାଳ । ଫୁଲ ଯେ ନେଲେ ନାଗବଳ ।
ମାମୁଙ୍କ ଘରୁରେ ଅର୍ପିବେ । ଫୁଲ ଦେଇ ଓଳଗି ହେବେ ।
ଜଗତ ଭଳେ ଫୁଲ ଦେବେ । ମେଲାଣି ହୋଇ ଚଳିଯିବେ ।
ଶୁଣିଣ ମାଏ ତୋଷ ହେଲେ । କୃଷ୍ଣଙ୍କ ଚୁମ୍ବନ ବହିଲେ ।
ଏତେ କଥା ଯେ କଲୁ ତୁହି । ବ୍ରହ୍ମାଣ୍ଡେ କେହି ଜାଣେନାହିଁ ।
ଧନ୍ୟରେ ପ୍ରଭୁ ଚକ୍ରଧର । ଅଶେଷ ମହିମା ତୋହର ।
ଯେ ଯାହାମତେ ପୁଏ ଗଲେ । ଯେ ଯାହାପୁରେ ପ୍ରବେଶିଲେ ।
ସମ ଗୋବିନ୍ଦ ବେନି ଭାଇ । ପଲ୍ୟଙ୍କ ପହୁଡ଼ିଲେ ଯାଇ ।
ଶ୍ରୀଅଙ୍ଗେ ଲେପନ୍ତି ଚନ୍ଦନ । ଲାଗି ହୋଇଲେ ଗୁଆ ପାନ ॥
ଶ୍ରୀହରି ଜଗତ ଜୀବନ । ଭକତ ଲୋକଙ୍କର ଧନ ।
ସୁଜନେ ଶୁଣ ଦେଇ ମନ । ଶ୍ରୀବାଳଚରିତ ପୁରାଣ ।
ଦାସବତ୍ସଳ ଭଗବାନ । ଜ୍ୟୋତି ଅଜ୍ୟୋତି ନିରଞ୍ଜନ
ଯାହାର କୃଷ୍ଣ ଭକ୍ତି ନାହିଁ । ତାହାର ଗତି ମୁକ୍ତି କାହିଁ ।
ଭଜିଲେ ପାଇବ ଶ୍ରୀଧର । ଅଶେଷ ଜଗତ ଈଶ୍ୱର ।
ଯାହାର କୃଷ୍ଣ ପଦେ ଆଶ । ତା ଜୀବ ବୈକୁଣ୍ଠରେ ବାସ ॥
ଏ ଗ୍ରନ୍ଥ ଅତି ସୁଧାମୟ । ଶୁଣିଲେ ତରିବ ନିଶ୍ଚୟ ।
ବ୍ରାହ୍ମଣ ମୁଖରୁ ଶୁଣିବ । ନୋହିଲେ ପାପ ଅର୍ଜିବ ।
ଅର୍ଦ୍ଧେ ଶୁଣିଲେ ଅଯୁଷୟ । ସମ୍ପୂର୍ଣ୍ଣେ ନାହିଁ କିଛି ଭୟ ॥
କହଇ ନୀଳାମ୍ବର ଦାସ । ମାନସେ ସ୍ମରି ପୀତବାସ ।

ଇତି ଶ୍ରୀ ପଦ୍ମତୋଳା ପୁରାଣେ କାଳୀ ଦଳନେ ଚ ମୋକ୍ଷଣେ ଶାଢ଼ୀ ବନ୍ଧନେ ଶ୍ରୀକୃଷ୍ଣ ଟୋପ ପ୍ରବେଶନେ ଗୋପୀକାକୃତ ଶ୍ରୀକୃଷ୍ଣଗୋପଲୀଳା କଥନେ ନାମ ଚତୁର୍ଥୋଽଧ୍ୟାୟଃ ।

---

## ପଞ୍ଚମ ଅଧ୍ୟାୟ

ଶୁକ ବୋଲନ୍ତି ନୃପବର । ସର୍ପେ ଯେ ଗଲେ ମଧୁପୁର ।
ବହୁ ଆସନ୍ତି ନାଗବଳେ । ଯେସନ ତରଙ୍ଗ ଚଳିଲେ ।
ଯୋଜନ ଧାପରେ ଅସନ୍ତି । ଫୁଲି ଫଣାରେ ଧରିଛନ୍ତି ।
ମିଳିଲେ ମଥୁରା କଟକେ । ଦେଖନ୍ତି ମଥୁରାର ଲୋକେ ।
ପୁଚ୍ଛନ୍ତି ଗ୍ରାମବାସୀ ମିଳି । କାହିଁକି ଅସିଛ କୁଣ୍ଡଳି ।
ସର୍ପେ ବୋଲନ୍ତି ହେ ବାଳକ । ଅମ୍ଭେ ଯେ କୃଷ୍ଣଚନ୍ଦ୍ର ଲୋକ ।
କାହିଁକି ପଚାର ଅମ୍ଭଙ୍କୁ । ଯାଉଛୁ ମାମୁଙ୍କ ଘମୁକୁ ।
ମାମୁଙ୍କ ଦରଶନେ କାର୍ଯ୍ୟ । ପ୍ରଭୁଙ୍କ ଦୂତ ହେଲୁ ଆଜ ।
ପେଖି ଅଛନ୍ତି ନରହରି । ଯାଉଛୁ ପଦ୍ମ ପୁଷ୍ପ ଧରି ।
କାହାକୁ ଭୟ ନ କରନ୍ତି । ଶ୍ରୀକୃଷ୍ଣ ଦୂତ ବୋଲିବନ୍ତି ॥
ପିଲା ବାଳକ ଖେଳୁଥିଲେ । ସର୍ପେ ଯେ ଅଡ଼ ହୋଇଗଲେ ॥
ପ୍ରଭୁଙ୍କ ଆଜ୍ଞା ଯେ ଏମନ୍ତ । ଦୁଷ୍ଟ ଯେ ପର୍ବତ ଅକାନ୍ତ ।
ଜିହ୍ୱା ଯେ ଲହ ଲହ ପାଟି । ସର୍ପ ଯେ ଅସୁଛନ୍ତି ଘୋଟି ॥
ସର୍ପେ ଯେ ଦାଣ୍ଡେ ଦାଣ୍ଡେ ଗଲେ । କାହାକୁ କଷ୍ଟ ନ କହିଲେ ।
ପ୍ରଭୁଙ୍କ ଏମନ୍ତ ମହିମା । କେ କହିପାରେ ଗୁଣସୀମା ।
କଂସକୁ କହିଲେ ଡଗର । ସମ୍ପଦ ସରିଲା ତୋହର ।
ଯୋଜନ ମାଡ଼ି ନାଗବଳ । ଆସନ୍ତି କରଣ ଚହଳ ।
ସମ୍ଭାଳ ମଥୁରା ନଗର । କହିଲି ତୁମ୍ଭର ଅଗର ।
ବାରତା ପାଇଲାକ କଂସ । ଛାଡ଼ିଲା ଯେ ଖର ନିଶ୍ୱାସ ॥
କଂସ ଯେ ହୋଇଲା ତାଟକା । ଦଇବ କଲା ମୋତେ ଦକା ।
କାହୁଁ ଅଇଲେ ନାଗବଳ । ପୂରିଲା ମୋହର ଯେ କାଳ ।
ପାତ୍ର ମନ୍ତ୍ରୀଙ୍କୁ ସେ ଡକାଇ । ଜଗାଳ ବାପ ଭ୍ରାଇ ଯାଇ ।
କଂସ ରାଜାର ଅଜ୍ଞାପାଇ । ସର୍ପଙ୍କୁ ଓଗାଳିଲେ ଯାଇ ।

ଜାହାଁଙ୍କ ଆସରେ ପାମର । ଏଡ଼େ ରେ ଗରବ ତୁମ୍ଭର ।
ସର୍ପେ ଯେ ଦେଲେ ତା ଉତ୍ତର । ଗମୁଛୁଁ ମାମୁଙ୍କ ଛାମୁର ॥
ଅମ୍ଭେ ଯେ ଶ୍ରୀକୃଷ୍ଣ ଭକତ । କହୁଲୁ ତୁମ୍ଭ ଆଗେ ସତ ।
କୃଷ୍ଣଙ୍କ ଦୂତ କର୍ଣ୍ଣେ ଶୁଣି । ସନ୍ତୋଷେ କଲେ ହରିଧ୍ୱନି ॥
ବୋଲନ୍ତି ଭଲ ଜଗନ୍ନାଥ । ଜଗତେ ଏଡ଼େ ସାମରଥ ।
ଜଗତଯାକ ସେ ମାଇଲ । ନାଗବଳଙ୍କୁ ଦୂତ କଲ ।
ଦେଖିଲେ ହରିଙ୍କ ଶ୍ରୀମୁଖ । ଛାଡ଼ିବ କୋଟିଜନ୍ମ ଦୁଃଖ ।
ଏମନ୍ତ ବୋଲନ୍ତି ବୋଇଲେ । ରାଜାଙ୍କ ପାଶେ ଚଳିଗଲେ ।
ଗୋଳ ମଥୁରା କଟକର । ରାଜାଙ୍କୁ କହନ୍ତି ଉତର ।
ଉତରେ କହେ କଂସାସୁର । କରିବା କେମନ୍ତ ପ୍ରକାର ॥
ଏଡ଼େରେ ଗରବ କରୁଛ । ମୋତେ ମାରିବା ତୁମ୍ଭେ ପାଞ୍ଚ ।
ତୁମ୍ଭଙ୍କୁ ମାରିବି ଏକ୍ଷଣି । ତୁମ୍ଭେ ନ ଜାଣ ସର୍ବ ଗତି ।
କଂସ ବୋଲଇ କୋପେ ଗୃହିଁ । ଉଗାଳ ନାଗବଳ ଯାଇ ॥
ସରବେ ଉଗାଳନ୍ତି ଗଲେ । ସର୍ପଗଣଙ୍କୁ ଉଗାଳିଲେ ॥
ଆକାଶେ ଲାଗୁଅଛି ଶିର । ପୃଷ୍ଠେହିଁ ଅଛଇ ଫଣାର ॥
ପର୍ବତ ସମାନରେ ଗଛ । ଦେଖି ହୋଇଲେ ମହାମେଛୁ
ଉତରେ ଛାଡ଼ି ପଳାଇଲେ । କଂସ ରାଜାଙ୍କୁ ଜଣାଇଲେ ॥
ଭେଦେବ ମହିମା ମଣିମା । ଅମ୍ଭର ଗୁହାରି ଶୁଣିମା ।
ତୁମ୍ଭର ଆଜ୍ଞା ପାଳି ଗଲୁ । ନାଗବଳଙ୍କୁ ଉଗାଳିଲୁ ।
କହିଲେ ଅମ୍ଭେ କୃଷ୍ଣ ଦୂତ । ସେପଟି ଅଛନ୍ତି ଗୋପୀନାଥ ।
ଫୁଲ କରିବା ସମର୍ପଣ । ରାଜାଙ୍କୁ କରିବୁ ଦର୍ଶନ ।
ସର୍ପ ମୁଖରୁ ଏହା ଶୁଣି । ହୋଇଲ ସମସ୍ତେ ମେଲଣି ।
ଏମନ୍ତେ ସର୍ପ ପ୍ରବେଶିଲେ । ଜଗତ ପାଶରେ ମିଳିଲେ ।
ସେକାଳେ ସିଂହଦ୍ୱାର ନରେ । ପଳାଇ ପଶିଲେ ଭିତରେ ।
କଂସ ଛାମୁକୁ ସର୍ପେ ଯାଇ । ଜଗତ ଭଳେ ଫୁଲ ଦୋଇ ॥

ସମସ୍ତେ ଓଳଗି ହୋଇଲେ । କଂସ ଛାମୁରେ ଜଣାଇଲେ ।
ଶୁଣ ମଥୁରାଦଣ୍ଡଧାରୀ । ଆମ୍ଭଙ୍କୁ ପେଷିଲେ ମୁରାରୀ ।
ବୋଇଲେ ଫୁଲ ଘେନିଯିବ । ମାମୁଙ୍କ ପାଶେ ସମର୍ପିବ ।
କଂସ ବୋଲଇ ଏହେନ ଗୀର । ଶୁଣରେ ନାଗୁଣୀ କୁମର ।
କାଳୀ ଯେ ଗର୍ବ କରୁଥିଲା । ତା ଗର୍ବ ଏବେ ନ ରହିଲା ॥
କାଳୀକି ମାରି ଧରି କର । ଫୁଲ ଆଣିଲେ ନରହରି ॥
କହନ୍ତି ନାଗୁଣୀ କୁମର । ସେ ପ୍ରଭୁ ଜଗତ ଠାକୁର ।
କାଳୀକୁ ଶାଢ଼ୀ ଦେଲେ ହରି । ପଦ୍ମପୁଷ୍ପରେ ଅଧିକାରୀ ।
ତାହାଙ୍କ ସମସ୍ତେ ସେବକ । ଜଗତ ସର୍ବ ତାର ଲୋକ ॥
ଇନ୍ଦ୍ର ଯେ ସ୍ୱର୍ଗପୁରେ ରାଜା । ବାସୁକୀ ତାହାଙ୍କ ପରଜା ।
ବ୍ରହ୍ମା ଯେ ସୁରପୁରେ ଠେକ । ହରିଙ୍କ ଚରଣେ ସେବକ ।
ଜଗତେ ସର୍ବେ ଭୃତ୍ୟ ତାର । ଶୁଣ ହେ ମାମୁଁ କଂସାସୁର ॥
ତାହାଙ୍କୁ ପର ନ ଥରି । ତାହାଙ୍କ ସଙ୍ଗେ ପ୍ରୀତି କରି ।
ନ ଧର ତାଙ୍କୁ ଆନଜନ । ସେ ପ୍ରଭୁ ଜଗତ ଜୀବନ ।
ଏମନ୍ତେ ତଅରନ୍ତି ସର୍ପେ । କଂସ ଯେ କହେ ମହାକୋପେ
କେତେବେ କରୁଅଛ ଠାଣି । ଭାଙ୍ଗିବି ତୁମ୍ଭ ଅଣ୍ଟପଣି ।
କେତେ କୃଷ୍ଣଙ୍କୁ ଦେଖି ରହ । ମୋତେ ଡରୁଅ ଦର୍ପେ ଥାଇ ।
ସେ କିସ କରିବାକୁ କ୍ଷମ । ମୁହିଁ ଟି ଯମୁ ବଳି ଯମ ।
ଚୌଦପୁରେ ରାଜାଙ୍କୁ ଜିଣିଲି । ଚରଣତଳେ ଖଟାଇଲି ।
ଇନ୍ଦ୍ର ଯେ ସ୍ୱର୍ଗପୁରେ ରାଜା । ମୋହର ହୋଇଲା ପରଜା ।
ସ୍ୱର୍ଗ ଯେ ଛାଡ଼ି ପଳାଇଲେ । ବ୍ରହ୍ମା ଯେ ଶରଣ ପଶିଲେ ॥
ଈଶ୍ୱର ଦେବତା ଡରନ୍ତି । ଗଙ୍ଗାର ଭିତରେ ଲୁଚନ୍ତି ॥
ଏବେ ହେ ଶୁଣ ନାଗବଳ । ମାରିବି ଯଶୋଦାର ବାଳ ॥
ଏମନ୍ତେ ପ୍ରତିଜ୍ଞା ସେ କଲା । ହସ୍ତରେ ଖଣ୍ଡା ବୁଲାଇଲା ।
ଖଣ୍ଡା ଯେ ବାଜିଲା କପାଳେ । ମୋହେ ପଡ଼ିଲା କଂସ ତଳେ ॥

ଉଠିଣ ମଥା ଅଉଁଶିଲା । ଖଡ଼ଗ ସଭ କହୁଥିଲା ।
ମନ୍ତ୍ରୀଙ୍କି କହେ କଂସରାୟ । ମୋ ମନ୍ ନ ଗଲଣି ଭୟ ।
ଜାଣିଲି ସପତ ବ୍ରହ୍ମାଣ୍ଡ । ଭଣଜା ଛିଣ୍ଡାଇବ ମୁଣ୍ଡ ।
ବୋଲନ୍ତି ପାଚ ମନ୍ତ୍ରୀ ଗୃହିଁ । ଶୁଣ ମଥୁରା ନରସାଇଁ ।
ଭଜ ହେ ଗୋବିନ୍ଦ ଚରଣ । ତାଙ୍କର ପାଦେ କର ଧ୍ୟାନ ।
ଯେ ଯାହା କହିଲେ ବୁଝାଇ । କାହାର କଥା ନ ମାନଇ ।
ସତରଲକ୍ଷ ଯେ ଭାରିଯା । କଂସର ପାଦେ କଲେ ପୂଜା ।
ହେତୀ ପ୍ରହେତୀ ବେନି ରାଣୀ । କଂସ ରାଜାର ପାଟରାଣୀ ।
ସେ ବେନି ବୋଲନ୍ତି ଏ ଗିର । କାହାକୁ ତବ ଏଡ଼େ ଡର ।
କଂସ ବୋଲଇ ଶୁଣି ସହି । ଗୋପରେ ଅଛଇ କହ୍ନାଇ ।
ସେ ଆସି ମୋତେ ଗୋ ମାରିବ । ମଥୁରାପୁରେ ରଜା ହେବ ॥
ଶୁଣି ସେ ଦିଅନ୍ତି ଉତ୍ତର । ସେ ପ୍ରଭୁ ଜଗତ ଠାକୁର ॥
ଚାଲ ସରବେ ଏବେ ଯିବା । ଗୋବିନ୍ଦ ପାଦରେ ସେବିବା ।
କଂସ ଯେ ତପଟେ ଅନାଇଁ । ତୁମ୍ଭେ ନ ଜାଣ ମାଈ ଗାଈ ॥
ଶୁଣି ବୋଲନ୍ତି ସର୍ବେ ରହି । ପେଟରେ ରାମନାମ ଥାଇ ।
ମୁଖରେ କହୁଛ ଉଡ଼ାଇ । ଅମ୍ଭଙ୍କୁ ଭୁଲାଅ କିପାଇଁ ।
କଂସ ବୋଲଇ ଶୁଣି ସହି । ମୁଁ ହସ୍ତେ ମାରିବି କହ୍ନାଇ ।
ସର୍ପେ ବୋଲନ୍ତି ନୃପସାଇଁ । ଅମ୍ଭଙ୍କୁ ରଖିଛ କିପାଇଁ ।
ମେଲାଣି ଦିଅ ହେ ଅମ୍ଭଙ୍କୁ । ଯିବୁ ଆପଣା ସଦନକୁ ।
କହୁଛ ମଥୁରା ରାଜନ । ତୁମ୍ଭ ଭଣଜା ନାରାୟଣ ।
ତୁମ୍ଭର ସଙ୍ଗେ ବାଦ କରି । ଅମ୍ଭେଯେ ନୋହୁ ତୋ ଅଇର
କଂସ ବୋଲଇ ସର୍ପେ ଶୁଣି । ଯେବେ ପେଷିଲେ ନାରାୟଣ ।
ତୁମ୍ଭର ନାହିଁ କିଛି ଦୋଷ । ତୁମ୍ଭଙ୍କୁ ହୋଇଲି ସନ୍ତୋଷ ।
ଆମ୍ଭର ଅଛଇ ବଇରି । ଗୋପରେ ରହିଛନ୍ତି ମୁରାରି ॥
ଯାହାର ହସ୍ତେ ମଲ୍ଲ ମୁହିଁ । ମୋ ହସ୍ତେ ନ ମଲା କହ୍ନାଇ ।

କହୁବ ଗୋପପୁରେ ଯାଇ । ଦୂତ ପଠାଇ ଗଲ୍ ତୁହ୍ନ ॥
ଗୋପପୁରକୁ ହେ ସମ୍ଭାଳ । ମାରବ ମଥୁରା ଭୂଆଳ ।
ସର୍ପକୁ କହନ୍ତେ ଏ ଗୀର । ଯାଅ ହେ ନାଗୁଣୀ କୁମର ।
ମାମୁଙ୍କ ଓଳଗୀ ହୋଇଲେ । ସେଠାରୁ ସର୍ପ ଚଳିଗଲେ ।
ଭଟକ ଦାଣ୍ଡେ ଦାଣ୍ଡେ ଗଲେ । କାଳିନ୍ଦୀ ଜଳରେ ମିଳିଲେ ।
କାଳୀ ବୋଲଇ ଶୁଣ ବାଳ । ମଥୁରାପୁରେ କି ଦେଖିଲ ।
ଦେଖିଲୁ ରାଜାଙ୍କ ସେବକ । କି ବୋଲି ବୋଇଲେ ବାଳକ ।
ମଥୁରାପୁରେ କଂସାସୁର । କଂସ କହିଲେ ଦଣ୍ଡଧର ।
ନାଗୁଣୀ କହୁଛନ୍ତି ରହୁ । ଯାହା କହୁଛୁ କାଳୀସାଇଁ ।
ମଥୁରାପୁରେ ଯେତେ ଲୋକ । ସରବେ ଦେଖିଲେ ଅନେକ ।
ବୋଲନ୍ତି କାହାର ଭୂଷଣ । ଏହା ଅନାଦି ନାରାୟଣ ।
କାଳୀଙ୍କ ଦୂତ ସେହୁ କଲେ । ଗୋପୀଙ୍କ ସଙ୍ଗରେ ମୋହିଲେ ।
ଏମନ୍ତେ ଶ୍ରୀଙ୍କୁ ଦେଖିଲେ । ଛାଟକା ହୋଇଣ ରହିଲେ ।
ଅନ୍ତେ ଗଲ୍ ମଥୁରାପୁର । ମିଳିଲ୍ ନୃପତି ଛାମୁର ।
ଜଗତି ତଳେ ଫୁଲ ଦେଲ୍ । କଂସକୁ ନମସ୍କାର କଲ୍ ।
ଦେଖିଣ କଂସ କଲା କୋପ । ଶୁଣରେ ନାଗୁଣୀର ସର୍ପ ।
ଏତେରେ ଭରସା ତୁମ୍ଭର । ଅସିଛ ମଥୁରା ନଗର ।
ବୋଇଲ୍ ଶୁଣ ଦଣ୍ଡଧାରୀ । ଅମ୍ଭଙ୍କୁ ପେଷିଲେ ମୁରାରି ।
ଶ୍ରୀହରି କହିବାରେ ଫୁଲ । ଆଣିଲ୍ ଛାମୁକୁ ତହାଳ ।
କୋପରେ କହିଲା ଅସୁର । ତୁମ୍ଭଙ୍କୁ ପେଷିଲା ଶ୍ରୀଧର ।
କହୁବ ଗୋପର ମୁରାରି । ଗୋପକୁ ନେବା ଜୁର କରି ।
ଏତେରେ ଭରସା ତୋହର । ମୋତେ ନ ଡରୁ ଚକ୍ରଧର ॥
ମାରିବ ବୋଲି ଅଛୁ ରହୁ । ତଜଦଗକୁ ଅଛୁ ଗୁହାଁ ।
କାଳୀ ଯେ ବୋଲିଅଛୁ ଗିର । ସେ ପ୍ରଭୁ କରୁଣା ସାଗର ।
ଏ ସବୁ ତାଙ୍କର ଭୂଷଣ । ସଂସାରେ ନ୍ତନ୍ତି ଯେତେ ଜନ ।

ନ ଭଜି ଯିବ କଂସ ପ୍ରାଣ । ମାରିବେ ଯଶୋଦା ନନ୍ଦନ ।
ଆବର କାଳୀ ଅଛି କହି । କହୁଣଛନ୍ତି ଭାବଗ୍ରାହୀ ।
କ୍ଷୀର ଅର୍ଣ୍ଣବେ ଚଳିଯିବା । ଅନନ୍ତେ ସଙ୍କେତ କହିବା ।
ସଙ୍କେତ ଦେଇଛନ୍ତି ହରି । ଏ ଶାଢ଼ୀ ଅଛଇ ତାଙ୍କରି ।
ଘେନ ହେ ବେଗେ ନାଗବଳ । ଏମନ୍ତେ ଚଳିଲେ ତତ୍କାଳ ।
ଅନନ୍ତ ପାଶରେ ମିଳିଲେ । ହରି ସଙ୍କେତ ଦେଖାଇଲେ ।
ହରଷ ମନେ ରହି ତହିଁ । କ୍ଷଣକେ ବାସ କାଳୀସାହିଁ ।
ଏମନ୍ତେ ଭାଜୁଅଛି କଂସ । ମାରିବ କୃଷ୍ଣେ ହୃଷୀକେଶ ।
କଂସକୁ କୃଷ୍ଣ ଦେଲ ଦଣ୍ଡା । କ୍ଷିତିଦବସେ ପାଏ ଶଙ୍କା ।
କାଳୀଦଳନ କଥା ଶୁଣ । ହସାନ୍ତି ତରିବ ସୁଜନ ।
ଶୁଣ ହେ କୃଷ୍ଣଲୀଳା ରସ । ଶୁଣିଲେ ହୋଇବ ସନ୍ତୋଷ ॥
ହରି ଭଜନ କରି ନିତ । ଲଭିବ ଯେ ପରମଗତି ।
ହରିଙ୍କି ଭଜ ନିରନ୍ତର । ଲଭିବ ବଇକୁଣ୍ଠ ପୁର ।
ଯାହାକୁ ଯେଉଁ ପଦ ବର । ଯାଚ ଦିଅନ୍ତି ଚକ୍ରଧର ।
ମୁକତି ଅଛଇ ବିଶ୍ୱାସ । ଭଣଇ ନୀଳାମ୍ବର ଦାସ ।

ଇତି ଶ୍ରୀ ପଦ୍ମତୋଳାପୁରାଣେ ନାଗବଳକୃତ କୃଷ୍ଣ ମଥୁରା ପ୍ରବେଶେ ନାଗବଳ କାଳନ୍ଦୀ ଗମନେ ନାମ ପଞ୍ଚମୋଽଧ୍ୟାୟଃ ।

## ଷଷ୍ଠ ଅଧ୍ୟାୟ

ଶୁକ କହନ୍ତି ନୃପ ଶୁଣ । ସଭା ଯେ କଲଟି ରାଜନ ।
ପାତ୍ର ମନ୍ତ୍ରୀଙ୍କୁ ବସାଇଣ । କହନ୍ତି ମଥୁରା ରାଜନ ।
କରିବା ରଙ୍ଗସଭା ଲୀଳା । ଦେଖିବ ଆସିବା ନନ୍ଦବାଳା ।
ପେଷିବା ଅକ୍ରୂର ଗୋପକୁ । ବାରତା କହେ ଅକ୍ରୂରକୁ ।
ଶୁଣ ଅକ୍ରୂର ମୋ ବଚନ । ଗୋପକୁ ଯିବୁ ତୁ ବହନ ।
ଚିଟାଉ ଲେଖିବାର ପାଇ । ଲେଖକ ନେଲେ ନୃପସାଇଁ ।
ଅଦ୍ୟରେ ଶିରୀ ଶିରୀ ବାଣୀ । ପ୍ରେରିତ କଂସ ନୃପମଣି ।

ଶୁଣରେ କୃଷ୍ଣ ବଳରାମ । ଏ ଘମୁ ଚିଠାଉ ବିଷମ ।
କରନ୍ତି ରଙ୍ଗସଭା ମୁହିଁ । ରାଜାମାନଙ୍କୁ ଡାକିଛଇଁ ।
ସଭା ଲାଗିଛି ରଙ୍ଗଲୀଳା । ଯାତ୍ରା ହୋଇବ ମହାଲୀଳା ।
ଅକ୍ରୂର ମୁଖରୁ ଶୁଣିଣ । ଆସିବୁ ମଥୁରା ବହନ ।
ତୁମ୍ଭଙ୍କୁ ହୋଇଲ ସନ୍ତୋଷ । ମୋ ବୋଲ କର ପୀତବାସ ।
ଯେବେ ତୁ ଅବଜ୍ଞା କରିବୁ । ନିଷ୍ଟୟ ତୁମ୍ଭଠାକୁ ଯିବୁ ।
ଗୋପାଳ ପୁଅଙ୍କୁ ମାରିବୁ । ନନ୍ଦ ଯଶୋଦା ଘଜଡ଼ିବୁ ।
ଯେବେ ଭଣଜା ହେବୁ ମୋର । ଆସ ତୁ ମଥୁରା ନଗର ।
ଏମନ୍ତ ଚିଠାଉ ଲେଖିଲ । ଅକ୍ରୂର ହସ୍ତେ ସମର୍ପିଲ ।
ଅକ୍ରୂର ମେଲାଣି ହୋଇଲ । ସେଠାରୁ ରଥ ଚଳାଇଲ ।
ଯମୁନା ତଟେ ରଥ ଥୋଇ । ସ୍ନାନ ବିହିଲ ବେଗ ହୋଇ ।
ସ୍ନାନ ସାରିଣ ଉଠିଗଲ । ରଥରେ ଯାଇଣ ବସିଲ ।
ଚଢିଲେ ରଥ ବୁଲାଇଲ । ଗୋପର ନଗରେ ମିଳିଲ ।
ଦାଣ୍ଡରେ ରଥ ରହାଇଲ । ପ୍ରଭୁଙ୍କ ନିକଟେ ମିଳିଲ ।
ପ୍ରଭୁଙ୍କୁ ଦରଶନ କଲ । ଚିଠାଉ ଗୋଟି ସମର୍ପିଲ ।
ପାଠ ଯେ କଲେ ହୃଷିକେଶ । ସଭାକୁ ରାଇଅଛି କଂସ ।
ଚିଠାଉ ଘେନି ଶିରପତି । ଅକ୍ରୂରେ ଏ ବାଣୀ ଭାଷନ୍ତି ।
କ୍ଷଣେକ ମାତ୍ର ତୁମ୍ଭେ ରହ । ଯିବୁ ମଥୁରା ନ ସନ୍ଦେହ ।
ଏତେକ ବଚନ ବୋଲୁଛନ୍ତି । ଯଶୋଦା ଦେଖିଣ ଆସନ୍ତି ।
ଧାଇଁଲେ ଏକକୁ ଆରେକ । ଧାଇଁଲେ ନନ୍ଦର ବାଳକ ।
କେହୁ କାହାକୁ ଧରାଧରି । ଭେଟିଲେ ଯାଇ ନରହରି ।
ମିଳିଲେ ପୁତ୍ରପାଶେ ଯାଇ । କେମନ୍ତେ ଛାଡ଼ିବି କହ୍ନାଇ ।
ଯେବେ ମଥୁରା ଚଳିଯିବୁ । ସମସ୍ତେ ଅଗ୍ନିରେ ପଡ଼ିବୁଁ ।
ଯାହର ବୋଲୁଛନ୍ତି ମାତ । ଲେଖା ପେଶିଛି ମୋ ଅଗ୍ରତ ।
ହାୟୁ କରିଣ କଂସାସୁର । ଆମ୍ଭଙ୍କୁ ଲୋଡ଼ିଲ ଅସୁର ।

ମାତା ଯେ ବୋଲୁଛନ୍ତି ହରି । ନ ଯାଅ ମଥୁରା ନଗରୀ ।
କପଟ କରି ଡକାଇଛି । ତୁ କି ନ ଜାଣୁ ଶିରୀବତ୍ସ ।
ଶ୍ରୀହରି ବୋଲୁଛନ୍ତି ମାତ । ଏ କଥା ନୁହଇ ଉଚିତ ।
ସଭିଙ୍କୁ କେମନ୍ତେ ନ ଯିବି । ମାମୁଙ୍କ ବୋଲ କି ଭାଙ୍ଗିବି ।
କୋପରେ ଆସିବ ଅସୁର । ଗୋପକୁ ନେବ କରି ଜୁର ॥
ନନ୍ଦ ଯୋଶୋଦା ଘଉଡ଼ିବ । ଆମ୍ଭ ଦୁହିଁଙ୍କି ଯେ ମାରିବ ।
ପୁନି କହନ୍ତି ନରହରି । ଶୁରିଦନେ ଆସିବୁ ଫେରି ।
ମାତା ପୁତ୍ରର ଯେ ବଚନ । ଗୋପୀ ବୋଲନ୍ତି ନାରାୟଣ ।
ଆମ୍ଭେ ନ ଛାଡ଼ିବୁଟି ଆଜ । ତୁମ୍ଭ ସଙ୍ଗରେ ଅମ୍ଭ କାର୍ଯ୍ୟ ।
ମାରିବ ବୋଲି କଂସାସୁର । ତୁ କି ନ ଜାଣୁ ଚକ୍ରଧର ।
କାଳୀକି ଛାଡ଼ିଦେଲୁ ହରି । ପୁଣି ଯେଷି ମଥୁରା ପୁରୀ ॥
ଶତ୍ରୁ ଯେ ମୋହର ନ ଗଲା । କପଟ କରି ଡକାଇଲା ।
ଅକ୍ରୂର ହସ୍ତେ ଲେଖା ଦେଇ । ଗଲେ ମାରିବ କଂସସାଇଁ ॥
ହସି କହନ୍ତି ଚକ୍ରପାଣି । କ୍ଷମା ଅଧୈର୍ଯ୍ୟ ଗୋପାଙ୍ଗଣୀ ।
ଶୁରି ଦିନରେ ଯେ ଅସିବୁ । ତୁମ୍ଭର ସଙ୍ଗେ ଭେଟ ହେବୁ ।
ମେଲାଣି ଦିଅ ଗୋପୀ ତୁମ୍ଭେ । କଣ୍ଟକର ଯାଉଛୁ ଅମ୍ଭେ ।
ସେଠାରୁ ପ୍ରଭୁ ପୀତବାସ । ମନ୍ଦିରେ ହୋଇଲେ ପ୍ରବେଶ ।
ସଜ ହୋଇଲେ ନନ୍ଦସୁତ । ପିନ୍ଧିଲେ ପୀତାମ୍ବର ପାଟ ।
କଟୀରେ ରତ୍ନ ଝଡ଼ିଅଣି । ନାସାରେ ମୁକୁତା ଖଞ୍ଜଣି ।
କର୍ଣ୍ଣରେ ଝଲକେ କୁଣ୍ଡଳ । ହୃଦରେ ମଣି ରତ୍ନମାଳ ॥
ପଦ୍ମରେ ରତ୍ନର କଠାଉ । ହୀରା ମାଣିକ ଦାଉ ଦାଉ ।
କନ୍ଧରେ ଶାରଙ୍ଗ ପଇତା । ଯେସନେ ଦିଶନ୍ତି ଜଗନ୍ନାଥ ।
ସଜ ହୋଇଲେ ନରୋତ୍ତମ । କୋଟିଏ ସିଂହର ପ୍ରାକର୍ମ ।
ବଳରାମ ଯେ ସଜହେଲେ । ମାତାପିତା ଦର୍ଶନ କଲେ ।
ଅକ୍ରୂର ଦରଶନ କଲା । ସେଠାରୁ ରଥ ବୁଲାଇଲା ॥

ମିଳିଲେ ଯମୁନା କୂଳର । ଅକ୍ରୂର କହେ ଯୋଡ଼ି କର ।
ମଣିମା ମଣିମା ମଣିମା । ମୋହର ଗୁହାରି ଶୁଣିମା ॥
ଏଠାରେ ରଥ ରଖାଇବ । ସ୍ନାନ ମୁଁ କରିବାକୁ ଯିବ ।
ଆଜ୍ଞା ଯେ ଦେଲେ ବନମାଳୀ । ଅକ୍ରୂର ଯାଅ ବେଗେଚଳି ।
ବିଳମ୍ବ ହେଉଛି ଅମ୍ଭଙ୍କୁ । ଯିବୁ ମଥୁରା ଭୁବନକୁ ॥
ଅକ୍ରୂର ବେଗେ ଚଳିଗଲା । ଯମୁନା ଜଳେ ସ୍ନାନ କଲା ।
ମୁଣ୍ଡ ବୁଡ଼ାଇ ସ୍ନାନ କଲା । ଜଳରେ ପ୍ରଭୁଙ୍କୁ ଦେଖିଲା ।
ପ୍ରଭୁଙ୍କ ମୁଖକୁ ଅନାଇଁ । ହସ୍ତ ଯୋଡ଼ିଲା ଉଭାହୋଇ ।
ହେ ପ୍ରଭୁ ବ୍ରହ୍ମାଣ୍ଡ ଠାକୁର । ଦେଖିଲି ଜଳର ଭିତର ।
ହସି କହନ୍ତି ଚକ୍ରପାଣି । ସ୍ନାନ ଯେ ସାରି ଆସ ପୁଣି ।
ପୁଣିହିଁ ମୁଣ୍ଡ ବୁଡ଼ାଇଲା । ଜଳରେ ପ୍ରଭୁଙ୍କୁ ଦେଖିଲା ।
ନିସ୍ତରି ନିସ୍ତରିଲି ମୁହିଁ । ଭଲ ଦେଖିଲି ଭାବଗ୍ରାହୀ ।
ମୋ ପୁରେ ଆଜ ରାତ୍ର ରହ । ଜଣାଉ ଅଛି ନନ୍ଦପୁଅ ।
ଶ୍ରୀହରି ବୋଇଲେ ଅକ୍ରୂର । ବିଳମ୍ବ ହେଉଛି ଅମ୍ଭର ।
ଆଜ ମଥୁରା ପୁର ଯିବୁ । କାଲି ତୁମ୍ଭ ପାଶେ ମିଳିବୁ ।
ଅକ୍ରୂର ସ୍ନାନ ଶେଷ କରି । ରଥ ବାହୁଲା ଧୀର କରି ।
ସେଠାରୁ ଗଲେ ନରହରି । ମିଳିଲେ ମଥୁରା ନଗରୀ ।
ଖଣ୍ଡେ ଦୂରରୁ ରଥ ରହି । ସେଠାରୁ ଗଲେ ଭାବଗ୍ରାହୀ ।
ଯାଇଁ ହୋଇଲେ ମଧୁବନ । ରହିଲେ ଗୃହେ ନାରାୟଣ ।
ଏମନ୍ତେ ବସୁଦେବ ବାଳା । କଲେ ମଥୁରାପୁରେ ଲୀଳା ।
କୁବ୍ଜା ସଙ୍ଗେ ପ୍ରୀତ କଲେ । ରଜକେ ବସ୍ତ୍ର ଦିଆଇଲେ ।
ଅକ୍ରୂର ସେଠାରୁ ଚଳିଲା । କଂସ ସ୍ଥାମୁରେ ଜଣାଇଲା ।
ଶୁଣ ହେ ଦେବ ଦଣ୍ଡଧାରୀ । ରଥେ ବସାଇ ନରହରି ।
ରଥରୁ ଓହ୍ଲାଇଣ ଗଲେ । ମଧୁବନରେ ସେ ରହିଲେ ।
ଶୁଣି ସାନନ୍ଦ ହେଲା କଂସ । ଆଜହୁଁ ଯିବ ଶତ୍ରୁନାଶ ॥

ଅକ୍ରୂର ମୁଖକୁ ଗୃହ୍ଣିଲେ । ଅନେକ ଧନ ରତ୍ନ ଦେଲେ ॥
ଅକ୍ରୂର ବାହୁଡ଼ିଣ ଗଲା । ନିଜ ମନ୍ଦିରେ ପ୍ରବେଶିଲା ।
ସିଂହ ଦୁଆରେ ମଲ୍ଲମାନ । ହସ୍ତୀ ଜଗାଇ ନୃପରାଣ ।
ଯେବେ ଆସିବ ନନ୍ଦସୁଠ । ତାହାଙ୍କୁ ନ ଛାଡ଼ିବ ବାଟ ।
ଯେବେ ଅମାନ୍ୟ କରି ଆସେ । ଯୁଦ୍ଧ କରିବ ତାର ପାଶେ ।
ବାଟ ଯେବେ ତୁମ୍ଭେ ଛାଡ଼ିବ । ତୁମ୍ଭଙ୍କୁ ନିଶ୍ଚୟ ମାରିବ ॥
ଏମନ୍ତେ କହି ଚଳିଗଲା । ଜଗତି ଉପରେ ବସିଲା ।
ବୋଲନ୍ତି ମାଳ ଯେ ପ୍ରହରି । ଜୀବ ଉଦ୍ଧାର ନରହରି ।
ତାଙ୍କର ହସ୍ତେ ଗଲେ ପ୍ରାଣ । ଲଭିବୁଁ ବୈକୁଣ୍ଠ ଭୁବନ ।
ଏମନ୍ତେ ମାନସେ ଚିନ୍ତନ୍ତି । ସିଂହଦୁଆରେ ଜଗିଛନ୍ତି ।
ଶ୍ରୀହରି ରହି ମଧୁବନ । ରାବକ କଲେ ଯେ ଶୟନ ।
ଦନ୍ତଦନ୍ତପଲ୍ଲଙ୍କେ ଶୋଇ । ଉଠିଲେ ତ୍ରୈଲୋକ୍ୟଗୋସାଇଁ ॥
ସ୍ନାନ ଯେ ସାରି ନରହରି । ଭାଇଙ୍କୁ ନେଲେ ସଙ୍ଗ କରି ।
ସଜ ଯେ ହୋଇ ବାହାରିଲେ । ସିଂହଦ୍ୱାରେ ପ୍ରବେଶ ହେଲେ ।
ଦେଖିଲେ ପ୍ରହରିମାନଙ୍କୁ । ଦର୍ଶନ କରିବ ରାଜାଙ୍କୁ ।
ହସ୍ତି ପ୍ରହରି ମଲ୍ଲଛନ୍ତି । ଛୁରି ଦୁଆରେ ଏହିମତି ।
ଛାଡ଼ଣ ଦିଅ ହସ୍ତିପାଳ । ରାଜଦର୍ଶନ ମୋର ମୂଳ ।
ଶୁଣି ହସ୍ତିପାଳ ବୋଇଲେ । ତୁମ୍ଭଙ୍କୁ ନ ଛାଡ଼ିବୁ ଭଲେ ।
ରାଜାଙ୍କ ଆଜ୍ଞା ନାହିଁ ଶୁଣ । ଦ୍ୱାର ଦ୍ୱାରକେ ଜଗାଇଣ ।
ତୁମ୍ଭଙ୍କୁ ଛାଡ଼ିଲେ ଶ୍ରୀଧର । ପରାଣ ନାଶିବ ଅମ୍ଭର ।
ଶୁଣି ବୋଲନ୍ତି ଶିରୀପତି । ମୋତେ ତୁ ନ ଛାଡ଼ିବୁ ହସ୍ତି ।
ମୋତେ ତୁ ଚିହ୍ନି ନାହୁଁ କିଏ । ମୋତେ ତୁ ଡରାଉଛୁ ଭୟେ ।
ରାଜାର ଭଣଜା ମୁଁ ଅଟେ । ଯିବି ମୁଁ ତାହାଙ୍କ ନିକଟେ ।
ଶୁଣି ହସ୍ତିପାଳ ବୋଲଇ । ଯେବେ ଭଣଜା ଅଟୁ ତୁହି ॥
କରିଣ ତୋହ ସଙ୍ଗେ ରଣ । ତେବେ ଜାଣିବ ନାରାୟଣ ।

ଶୁଣି ବୋଲନ୍ତି ନରହର । ମୁଁତ ପିଲା ବାଳକ ପର ।
ଯୁଦ୍ଧ ମୁଁ ନ ଜାଣେ ବାହୁତ । ଛାଡ଼ଣ ଦିଅ ରାଜ ଦୂତ ।
ହସ୍ତିପାଳ କୋପେ ବୋଲଇ । ବନାଯୁଛେ ନ ଛାଡ଼ିବଇଁ ।
ଶୁଣିଣ ନନ୍ଦପୁଅ କହ୍ନା । ଗରବଗଞ୍ଜନ ଯା ବାନା ॥
ଯୁଦ୍ଧରେ ହେଲେ ଅଗ୍ରସର । ଶ୍ରୀକୃଷ୍ଣ ପୁଣି ହଳଧର ॥
ଲଗୁଡ଼ ଧରିଛନ୍ତି ରାମ । ଶୁଣ ଠାଣନ୍ତି ନରୋତ୍ତମ ।
ଏମନ୍ତେ ହସ୍ତୀକୁ ମାଇଲେ । ହସ୍ତିପାଳକୁ ତାହା ତୁଲେ ।
ହସ୍ତୀ ଯେ ମଲା ପ୍ରଭୁହସ୍ତେ । ଉଗର କହିଲା ତୁରିତେ ॥
ଶୁଣ ମଥୁରା ଦଣ୍ଡଧାରୀ । ହସ୍ତିକି ମାଇଲେ ଶ୍ରୀହରି ।
ଶୁଣିଣ କଂସ ଯେ ଚତୁର । ମଲ୍ଲଙ୍କୁ ଜଗିଅ ରଖାଇ ॥
ପୁର ଦ୍ୱାରରେ ଜଗିଥିବ । ବାଟ ତାହାଙ୍କୁ ନ ଛାଡ଼ିବ ।
ଯେବେ ଛାଡ଼ିବ ବାଟ ତୁମ୍ଭେ । ନିଷ୍ଟସ୍ଥ ମାରିବୁଟି ଅମ୍ଭେ ।
ଏମନ୍ତେ କହି କଂସରାୟ । ରହିଲା ଲଭି କୃଷ୍ଣଭୟ ।
ଏମନ୍ତ କାଳେ ନରହରି । କହନ୍ତି ଭଲ ଦଣ୍ଡଧାରୀ ।
ମାରିବା ପାଇଁ ଏତେ କୁଟ । ଜାଣିଲି ତୋହର କପଟ ।
ଅରେ ରେ ବାଟ ଛାଡ଼ ତୁମ୍ଭେ । ସଭା ଦେଖିଣ ଯିବୁ ଅମ୍ଭେ ।
ଶୁଣିଣ ଦୂତ କହୁଛନ୍ତି । କେମନ୍ତେ ଯିବ ହେ ଶ୍ରୀପତି ॥
ହସ୍ତୀ ସଙ୍ଗରେ କଲ ରଣ । ତାହାଙ୍କୁ ମାଇଲ ଆପଣ ।
କେବେ ତୋତେ ଛାଡ଼ି ନଦେବୁ । ତୋ ସଙ୍ଗେ ଯୁଦ୍ଧ ଯେ କରିବୁ ॥

ଶ୍ରୀକୃଷ୍ଣ ଉବାଚ

ମୋ ସଙ୍ଗେ ବାଦ କାହିଁପାଇଁ । ମୋତେ କି ଚହ୍ନି ନାହଁ ତୁହି ।
ଛେଦିବି ଏହିକ୍ଷଣି ଶିର । ଦ୍ୱିଗୁଣ କୋପେ ଚକ୍ରଧର ।
ମଲ୍ଲ ପ୍ରହରି ସୈନ୍ୟ ଯେତେ । ସର୍ବଙ୍କୁ ମାଇଲେ ତୁରିତେ ।
ସର୍ବଙ୍କୁନାଶି ଚକ୍ରଧର । ଭେଟିଲେ ରାଜା ଦରବାର ।
ପାତ୍ର ମନ୍ତ୍ରୀ ଯେ ରାଜାମନେ । ପାଦେ ପଡ଼ିଲେ ସର୍ବଜନେ ।

ରାଜାମାନେ ଓଳଗି ହେଲେ । ପ୍ରଭୁଙ୍କ ପଛେ ଉଭା ହେଲେ ॥
ପ୍ରଭୁଙ୍କୁ ସ୍ତୁତି କରୁଛନ୍ତି । ରଜା ଯେ ବଚନ ବୋଲନ୍ତି ॥
ତୁମ୍ଭପରି ଥାଉ ଶ୍ରୀହରି । କଂସକୁ ନ ପାରିଲୁ ମାରି ॥
ରାଜତ୍ୱ ଛାଡ଼ି ପଳାଇବା । ଅରଣ୍ୟ ଗିରିରେ ଲୁଚିବା ।
ହସି ବୋଲନ୍ତି ଚକ୍ରପାଣି । ମରିବ କଂସ ନୃପମଣି ।
କେତେ ତୁମ୍ଭଙ୍କୁ ଦେଏ କଷ୍ଟ । ଭାଙ୍ଗିବି ତାହାର ମୁଁ ଅଣ୍ଟ ।
ରାଜାଙ୍କ ଦର୍ଶନ ନିମନ୍ତେ । ଡକାଇଲା ଅକ୍ରୂର ହସ୍ତେ ।
ଦର୍ଶନ ହେବ ଆଜ ମୋର । ଚଳିବୁ ଗୋପର ନଗର ।
ଜଗତି ନିକଟକୁ ଗଲେ । କଂସର ସନ୍ନିଧେ ମିଳିଲେ ।
ଦେଖିଣ କଂସ କଲା କୋପ । ଆସିଲା ମୋର କାଳସର୍ପ ।
ତହୁଁ ଦ୍ୱିଗୁଣ କୋପୀ ହେଲା । ହସ୍ତରେ ଖଣ୍ଡା ବୁଲାଇଲା ॥
ମାରିବି ବୋଲି ଉଠାଇଲେ । ଶ୍ରୀହରି ପାଣି ବିସ୍ତାରିଲେ ॥
ଗର୍ଭରେ ଚଉଦ ବ୍ରହ୍ମାଣ୍ଡ । ଦେଖିଣ ଭ୍ରାନ୍ତ ହେଲା ଭଣ୍ଡ ।
ଭ୍ରମିଲା ଶିର ପଡ଼ିମଲା । ଆପଣା ହସ୍ତେ ପ୍ରାଣ ଦେଲା ॥

### ଶ୍ରୀକୃଷ୍ଣ ଉବାଚ

ଶୁଣ ହେ ସର୍ବ ସଭାଜନେ । କପଟ କରି ମୋତେ ଆଣେ ।
ମଞ୍ଚାରୁ ପଡ଼ି ମାମୁଁ ମଲା । ମୋତେ ତ ଦଇବ ରଖିଲା ॥
ଆପଣା ହସ୍ତେ ଜିହ୍ୱା ଛେଦ । କେ ଅଛି ତାର ପ୍ରତିବାଦୀ ।
ଶୁଣିଣ ରାଜାମାନେ କହୁ । ପ୍ରଭୁଙ୍କ ପାଶେ ଉଭା ହୋଇ ।
ପରର ମନ୍ଦ ଯେ ଚିନ୍ତଇ । ଦଇବ ତାହାକୁ ମାରଇ ।
ଅସୁର ଗଲା ଶସୁ ଭୟ । ଦୟା କରିଲେ ଦେବରାୟ ।
ଉଗ୍ରସେନକୁ ଡକାଇଲେ । ତାହାର ମୁଣ୍ଡେ ଶାଢ଼ୀ ଦେଲେ ॥
ସମସ୍ତ ରାଜାମାନେ ଥାଇ । ଉଗ୍ରସେନକୁ ରାଜ୍ୟ ଦେଇ ।
ଉଗ୍ରସେନକୁ ରଜାକଲେ । ସେଠାରୁ ପ୍ରଭୁ ଚଳିଗଲେ ।
ଯାଇ ହୋଇଲେ ମଧୁବନ । ରହିଲେ ଆପଣା ଭୁବନ

ପିତା ମାତାଙ୍କୁ ବନ୍ଦୀ ଦେଖି । ଫିଟାଇ ଦେଲେ ପଦ୍ମଅଖି ।

## ବସୁଦେବ ଉବାଚ

କଂସ ଯେ ବନ୍ଦ କରିଥିଲା । ଢୋର ସଙ୍କାଶେ ଫିଟିଗଲା ।
ଦେବକୀଙ୍କୁ ଏତେ କଷ୍ଟ ଦେଲା । ଆମଣା ହସ୍ତେ ସେହୁ ମଲା ।
ହେଜା ପ୍ରଚହଜା ଚଜନ ରାଣୀ । କଂସର ନିଧନ ଯେ ଶୁଣି ।
ମନ୍ଦରୁ ବାହାର ହୋଇଲେ । କଂସର ନିକଟେ ମିଳିଲେ ।
ରୋଦନ କଲେ ଦୁଇରାଣୀ । ନୟନୁ ବହୁଅଛି ପାଣି ।
ଏବେ ଛାଡ଼ିଲ ଦଣ୍ଡଧାରୀ । କା ଆଗେ କରିବୁଁ ଗୁହାରି ।
ଛାଡ଼ିଲ ଆମ୍ଭଙ୍କୁ ହେ ନାଥ । ଢୋଟେ ମାଇଲା ଗୋପୀନାଥ ।
ଭଗିଣ ଦେଲେ ଅଳଙ୍କାର । ସବୁକୁ କଲେ ନାରଖାର ।
ଅହା ହେ ପରାଣ ସଙ୍ଗାତ । ଏକା ରହିଲ ପ୍ରାଣନାଥ ।
କା ଅଙ୍ଗେ କସ୍ତୁରୀ ଲେପିବ । କା ଅଙ୍ଗେ ଚନ୍ଦନ ବୋଳିବ ।
କାହାକୁ ଶଯ୍ୟା କରିଦେବ । କାହାକୁ ବଚନ କହିବ ।
ଏବେ ହୋଇଲ ନାରଖାର । ମଥୁରା ହେଲା ଅସୁନ୍ଦର ।
ପ୍ରଭୁ ନ ଭଜି ପ୍ରାଣ ଦେଲୁ । ଏବେ କାହାକୁ ଦେଇଗଲୁ ।
ଏମନ୍ତେ ରୋଦନ କରଇ । ଆମ୍ଭଙ୍କୁ କେହୁ ଶାଖୀ ନାହିଁ ।
ନନ୍ଦପୁଅ ବଡ଼ ନାଗର । ମାମୁଙ୍କୁ କଲା ଯେ ସଂହାର ।
ଜଗତେ ଶୋଭା ନ ଦଶିଲା । ମାମୁକୁ ଭଣଜା ମାଇଲା ।
ମାମୁଙ୍କୁ ହସ୍ତରେ ମାଇଲା । ଉଗ୍ରସେନକୁ ରାଜା କଲା ।
ଅକାଶେ ତାରା ଜତୁଛନ୍ତି । ସେ କି ଦଶିବେ ସୂର୍ଯ୍ୟଜ୍ୟୋତି ।
ଲକ୍ଷେ ରାଜା ମଉଡ଼ମଣି । ତାକୁ ମାଇଲେ ଚକ୍ରପାଣି ।
ମାଇଁଙ୍କ ରୋଦନ ଶୁଣିଣ । ଅଇଲେ ପ୍ରଭୁ ନାରାୟଣ ।
ମୋହର ଦୋଷ ନାହିଁ ତଲେ । ମାଇଁଙ୍କ ଶ୍ରୀହରି ବୋଇଲେ ।
କେତେ ସେ ଯଜ୍ଞ ଭଗ୍ନ କଲା । ଦେବଙ୍କୁ କଷ୍ଟ ଦଆଇଲା ।
ପୂତନା ଅସୁରୀ ପଠାଇ । କହିଲା ଯାଅ ବେଗ ହୋଇ ।

ଯଶୋଦା ପୁଅକୁ ମାରିବୁ । ନିଶ୍ଚେ ତା ପ୍ରାଣ ବିନାଶିବୁ ।
ରେ ଷଣ୍ଢ଼ ଶଙ୍ଖା ବଙ୍କା ତୃଣୀ । ତା ପ୍ରାଣ ନାଶ ଦ୍ୱେଷଣି ।
କାଳନ୍ଦୀ ଜଳେ ଯାଉ ହରି । ଦଂଶିବ କାଳୀ ଯାଇ କରି ।
ମଲ୍ଲ ପ୍ରହର ହସ୍ତୀ ଯେତେ । ଯୁଦ୍ଧକୁ ଲଗାଇଲା ମୋତେ ।
ଏତେକ ଉପାୟେ ସେ କଲା । ମାରିବ ଯଶୋଦାର ବଳା ।
ପରର ମନ୍ଦ ଯେ ଚିନ୍ତଇ । ଦଇବ ତାହାକୁ ମାରଇ ॥
ଆପଣା ହସ୍ତରେ ସେ ମଲା । ମୋତେତ ଦଇବ ରଖିଲା ।
ଏମନ୍ତେ ରାଣୀ ବେନି ଜନ । ପିତା ଗୃହେ କଲେ ଗମନ ।
ଶ୍ରୀହରି ଶାନ୍ଦୀପନି ପୁରେ । ମିଳିଲେ ଅବନ୍ତୀ ନଗରେ ।
ସେଠାରେ ବିଦ୍ୟା ଶିକ୍ଷାକଲେ । ଗୁରୁଙ୍କୁ ଏ ଦକ୍ଷିଣା ଦେଲେ ।
ଯମପୁରକୁ ଚାଲିଗଲେ । ଗୁରୁଙ୍କ ପୁଅ ଆଣିଦେଲେ ।
ପୁଣି ନାଗର ଷଡ଼ଭାଇ । ସଙ୍ଗେ ଆଣିଲେ ଯଦୁସାଇଁ ।
ଉତ୍ତର ଦେଶେ ଜରାସନ୍ଧ । ଦ୍ୱିରାଣୀ ମିଳିଲେ ସନ୍ନିଧ ।
ମିଳିଲେ ପିତା ସନ୍ନିଧାନ । କହିଲେ ସଂଶୟ ଫେଡ଼ଣି ।
ମାଇଲା ଯଶୋଦା ନନ୍ଦନ । ଶୁଣି ହେ ଜନକ ରାଜନ ।
ମଥୁରାପୁରେ ଦଣ୍ଡଧାରୀ । ତାଙ୍କୁ ମାଇଲେ ଚକ୍ରଧାରୀ ।
ଉଗ୍ରସେନକୁ ରାଜା କରି । ତା ମୁଣ୍ଡେ ଶାଢ଼ୀ ଦେଲେ ହରି
ଯାହାକୁ ଈଶ୍ୱର ଡରନ୍ତି । ବ୍ରହ୍ମା ଯେ ଶରଣ ପଶନ୍ତି ।
ସର୍ବ ଦେବତା ଖଟିଥାନ୍ତି । ତାଙ୍କର ଚରଣ ସେବନ୍ତି ।
ଏମନ୍ତ ମହିମା ଯାହାର । ତାଙ୍କୁ ମାଇଲେ ଚକ୍ରଧର ।
ମଥୁରାପୁରରେ ପଶିଲା । ମାମୁଙ୍କୁ ପ୍ରାଣରେ ମାଇଲା ।
ତୋତେ ମାରିବା କି ଅଶ୍ଚର୍ଯ୍ୟ । କହିଲା ପିତା ଯାଇ ବୁଝି ।
ଝିଅଙ୍କ ମୁଖରୁ ଶୁଣିଣ । କୋପରେ ଅଗ୍ନି ତପଣ ॥
ମିଳିଲା ମଥୁରା ନଗରେ । କାହାକୁ ନ ଦେଖି ସେଠାରେ
ମନରେ ଚିନ୍ତାଯୁକ୍ତ ହେଲା । ଆପଣା ମନ୍ଦିରେ ମିଳିଲା ।

ଝିଅ କହନ୍ତି ପିତା ଶୁଣ । ଲୁଚିଅଛନ୍ତି ମଧୁବନ ॥
ଶୁଣିଣ ଜରାସନ୍ଧ ଗଲା । ମଧୁବନେ ଯାଇ ଖୋଜିଲା ॥
ନ ଦେଖି ସେଠାରେ ଅସୁର । କାହିଁ ଲୁଚିଲେ ଚକ୍ରଧର ॥
ଥରକୁ ଥର ଯେ ଅସୁର । ଅଇଲା ଏକୋଇଶ ବାର ॥
ପ୍ରଭୁଙ୍କ ଭେଟ ନ ପାଇଲା । ମନରେ ଦୁଃଖୀ ତା ହୋଇଲା ॥
ଚଳିଣି ଗଲା ନିଜ ପୁର । ଭାବିଣ ରହିଲା ଅସୁର ॥
ମୁଚ୍‌କୁନ୍ଦ ନାମେ ଏକ ଋଷି । ତପସ୍ୟା କରୁଛନ୍ତି ବସି ॥
ଗଣ୍ଡକୀ ନଦୀତୀରେ ଯାଇ । ବସିଅଛନ୍ତି ଯୋଗଧ୍ୟାୟୀ ॥
ଯାହାକୁ ଦେଖିବେ ସେ ଅନାଇଁ । ସେ ଲୋକ ଯିବ ଭସ୍ମ ହୋଇ ॥
ବ୍ରହ୍ମା ଶଙ୍କର ଆଦିଗଣ । ନ ଯାନ୍ତି ତାର ସନ୍ନିଧାନ ॥
ଏମନ୍ତ ଋଷିଙ୍କ ମହିମା । କେହୁ ନ ଲଙ୍ଘେ ତାର ସୀମା ॥
ବିଚାର କଲେ ହୃଷିକେଶ । କେମନ୍ତେ ଯିବି ତାର ପାଶ ॥
ଯେବେ ତା ନିକଟକୁ ଯିବି । ନିଶ୍ଚୟ ଭସ୍ମ ମୁଁ ହୋଇବି ॥
ବାଧ ହୋଇଣ ତହିଁ ଯିବା । କୁଡ଼ିଆ ଭିତରେ ରହିବା ॥
ଜରାସନ୍ଧର ଭୟେ ଗଲେ । ଋଷିଙ୍କ ମଠେ ପ୍ରବେଶିଲେ ॥
ଗୁମ୍ଫାତୀରେ ଯାଇ ହୋଇଲେ । ମାଛି ରୂପେ ତହିଁ ରହିଲେ ॥
ରହିଲେ ମାଛିରୂପେ ହରି । ଧ୍ୟାନେ ଜାଣିଲେ ତପସ୍ୱୀ ॥
ଶ୍ରୀହରି ଅଛନ୍ତି ମୋଠାରେ । ଜାଣିଲେ ଯୋଗର ବଳରେ ॥
ଏମନ୍ତ ମାନସେ ଜାଣିଲା । ନିଜ ଧ୍ୟାନରେ ରତ ହେଲା ॥
ମନେ ବିଚାରେ ଜରାସନ୍ଧ । ରହି ଅଛନ୍ତି ଆଦିକନ୍ଦ ॥
ମୁଚ୍‌କୁନ୍ଦ ଋଷି ମଠେ ଯାଇ । ରହି ଅଛନ୍ତି ଭାବଗ୍ରାହୀ ॥
କେମନ୍ତେ ସେଠାକୁ ମୁଁ ଯିବି । ଗଲେ ମୁହିଁ ଭସ୍ମ ହୋଇବି ॥
ପ୍ରଭୁ ନିମନ୍ତେ ସିନା ଯିବି । ଯୁଦ୍ଧ ନ କରି ନାଶ ହେବି ॥
ଋଷି ଯେ ଏମନ୍ତ ଧ୍ୟାନରେ । ବସିଲେ ଯୋଗ ସହକାରେ ॥
ଭୟରେ ନ ଗଲା ଅସୁର । ଭେଟ ନ ହେଲା ଚକ୍ରଧର ॥

କଷ୍ଟ ଦନହୁଁ ତହିଁ ଗଲା । ଜାଣିଲେ ଅସୁର ରହିଲା ।
ଶ୍ରୀହରି ଗରୁଡ଼େ ସ୍ମରିଲେ । ରମ୍ୟକୁ ଆସ ତୁହି ଭଲେ ।
ମିଳିଲା ଆସି ପକ୍ଷୀବର । ପ୍ରଭୁଙ୍କୁ ଯୋଡ଼ିଅଛି କର ।

ଶ୍ରୀକୃଷ୍ଣ ଉବାଚ

ବୋଲନ୍ତି ଶୁଣ ପକ୍ଷୀବର । ପିଠିରେ ବସିବି ତୋହର ।
ଆଜ୍ଞା ପାଇଣ ପିଠି ପାତି । ତହିଁ ବସିଲେ ଶିଖିପତି ।
ଉଡ଼ିଲା ଗଗନ ମାର୍ଗରେ । ଦେଖୁ ଅଛନ୍ତି ଚକ୍ରଧର ।
ଯେ ଦଗେ ଅପଡ଼ା ଦେଖିବା । ସେହି ଦଗେ ଅମ୍ଭେ ରହିବା ।
ଚାରି ଦଗକୁ ଅନାଇଁଲେ । ସମୁଦ୍ରେ ଦ୍ୱୀପେ ଯେ ଦେଖିଲେ
ଏହିଠାରେ ଅମ୍ଭେ ରହିବା । ଓହ୍ଲାଇ ଦଅ ପକ୍ଷୀ ଯିବା ।
ପ୍ରଭୁଙ୍କୁ ଓହ୍ଲାଇ ଗରୁଡ଼ । ପାଦେ ପଡ଼ିଲା ବିଷମୁଡ଼ ।
ସମୁଦ୍ର ମଧ୍ୟରେ ଶ୍ରୀଧର । ରହିଲେ ଅଚର ମନ୍ଦର ।
ଶେଷରେ କୁଟୁମ୍ବ ଘାଇଲେ । ତହିଁ ମଧ୍ୟରେ ବାସ କଲେ ।
ତାହାର ନାମ ଯେ ଦ୍ୱାରକା । ଶତ୍ରୁର ନାହିଁ ତହିଁ ଶଙ୍କା ।
ଆଜ୍ଞା ଯେ ଦେଲେ ଖଗଗ୍ରାହୀ । ଯାଅ ରମ୍ୟକଦ୍ୱୀପେ ତୁହି ।
ଗରୁଡ଼ ମେଲାଣି ହୋଇଲା । ନିଜ ପୁରକୁ ଚଳିଗଲା ।
ଦ୍ୱାରକାବାସୀ ଅଦ୍ଭୁତ । ତାହା ଶୁଣିଲା ଜରାସନ୍ଧ ।
ମୋତେ ଦେଖିଲେ ନାରାୟଣ । ରହିଲେ ସମୁଦ୍ର ମଧ୍ୟେଣ ।
ରଣ କରିବି ତା ସଙ୍ଗରେ । ପ୍ରାଣେ ନାଶିବି ସେହିଠାରେ ।
ଆଇଲା କୋପରେ ଅସୁର । ମିଳିଲା ସମୁଦ୍ରର ତୀର ।
ପୁଣି ବିଚାରେ ମନେ ମନେ । ତାହାକୁ ମାରିବି କେସନେ ॥
ଯେ ଭୟେ ଲଙ୍ଘିଲା ସାଗରେ । ତାତ ଯୁଦ୍ଧ ନୁହେ ତାରେ ।
ସମୁଦ୍ର ପାର ନ ହୋଇଲା । ଭଲ ଦେଖିଲି ନନ୍ଦବଳା ।
ଏକୋଇଶ ଥର ମୁଁ ଗଲି । ପ୍ରଭୁଙ୍କ ଭେଟ ନ ପାଇଲି ।
ମନେ ବିଚାରିଣ ଅସୁର । ଚଳିଣ ଗଲା ନିଜପୁର ।

କହିଲେ ପ୍ରଭୁ ଚକ୍ରଧର । ଦେଖ ହେ ସମୁଦ୍ର ମଧ୍ୟର ।
ସେହିଠାରେ ଦ୍ୱାରକା ହେଲା । ଦ୍ୱାରକାଧାମ ବୋଲାଇଲା ।
ସୁଜନେ ଶୁଣ ଏହି ରସ । ପଦ୍ମତୋଳା ପୁରାଣ ଶେଷ ।
ଏମନ୍ତେ କୃଷ୍ଣର ଚରିତ । ଶ୍ରୀହରି ମହିମା ଅଦ୍ଭୁତ ।
ହରିଙ୍କି ଭଜ ନିରନ୍ତର । ଲଭିବ ବଇକୁଣ୍ଠ ପୁର ।
ଏହାକୁ ମାନବେ ଶୁଣନ୍ତି । ଶୁଣିଲେ ପାପୁ ନିସ୍ତରନ୍ତି ॥
ଗୋ ହତ୍ୟା ବ୍ରହ୍ମହତ୍ୟାମାନ । ଏସବୁ ହୁଅଇ ମୋଚନ ।
ଏଢାରେ ଯେ ଜନ ପଢ଼ଇ । ଅଗ୍ନୀ ଦୋଷୁ ନିସ୍ତରଇ ।
ଅନ୍ଧ ଯେ ଚକ୍ଷୁଦାନ ପାଇ । ପଢ଼ିଲେ ମୁକତି ଲଭଇ ।
ଦରିଦ୍ର ଶୁଣିଲେ ପୁରାଣ । ନିଶ୍ଚୟ ହେବ ଧନୀଜନ ।
ସର୍ବଜନ ବସି ଶୁଣିବ । ହରିଙ୍କ ନାମ ଭାବୁଥିବ ।
ମୋହର ନ ଧରିବ ଦୋଷ । ମୁଁ ଅଟେ ତୁମ୍ଭ ପାଦ ଦାସ ।
ଶ୍ରୀକୃଷ୍ଣ ପାଦେ କରି ଆଶ । ଭଣଇ ନୀଳାମ୍ବର ଦାସ ।

ଇତି ଶ୍ରୀ ପଦ୍ମତୋଳା ପୁରାଣେ ଶ୍ରୀହରି ମଥୁରା ଗମନେ
କଂସ ନିଧନେ ଶ୍ରୀକୃଷ୍ଣ ଦ୍ୱାରକାରେ ନିକେତନେ
ନାମ ଷଷ୍ଠୋଽଧ୍ୟାୟଃ ।

—ସମାପ୍ତ—

ମୁଦ୍ରାକର—ଶ୍ରୀ ଦାଶରଥି ଦାସ, ଦାଶରଥି ପ୍ରେସ୍, କଟକ—୨